୨୦୦୬ ମସିହା ଭୁବନେଶ୍ୱର ପୁସ୍ତକମେଳା ଉପଲକ୍ଷେ

# ଗଳ୍ପ ସଂକଳନ



ବିଭୂତି ପଟ୍ଟନାୟକ
ରବି ପଟ୍ଟନାୟକ
ବିଜୟକୃଷ୍ଣ ମହାନ୍ତି
ଇନ୍ଦିରା ଦାଶ
କ୍ଷୀରୋଦ ଦାସ
ଯୁଗଳ କିଶୋର ଦତ୍ତ

ସମ୍ପାଦନା :
ଯୁଗଳ କିଶୋର ଦତ୍ତ

୫ ଟଙ୍କା

# ମୁହୂର୍ତ୍ତ କେତୋଟିର ମହାଭାରତ

ବିଭୂତି ପଟ୍ଟନାୟକ

ଫାଟକ ଖୋଲି ଭିତରକୁ ପ୍ରବେଶ କଲାବେଳେ ତାକୁ ନିଶ୍ଚୟ ଦେଖିଥିବ ମୃଣାଳ; କିନ୍ତୁ ସେ କଥାଟା ସେ ତାଙ୍କୁ କହିବ କି ନାହିଁ; ସେ ବିଷୟରେ ନିଃସନ୍ଦେହ ହୋଇପାରୁ ନଥିଲା ସୀମା ।

କହିଦେଲେ ଅବା ତା'ର ଆଉ ଚମକି ପଡ଼ିବାର କ'ଣ ଅଛି ? ହୁଏତ ଦିନେ ତାକୁ ନିଜେ ମୁହଁ ଖୋଲି କହିବାକୁ ହେବ; ମତେ କ୍ଷମା କର, ମୁଁ ନିଜ ସହିତ ଆଉ ଲୁଚକାଳି ଖେଳି ପାରିବି ନାହିଁ । ମତେ ଦୂର ଶାଳବଣ ଡାକ ଦେଉ ଯାଉଛି !

କାହିଁ ବଣ ? କାହିଁ ବା ଲମ୍ବା ଲମ୍ବା ଶାଳଗଛ ?

ଏଠାରେ ତ କେବଳ ସେଇ ଖର୍ବକାୟ କ୍ରୋଟନ୍, ଟଗର, ଡରାଟ ଗଛ । ବାଡ଼ି କୋଣରେ ଚୁପ୍‌ଚାପ୍ ଠିଆ ହୋଇଛି ବିନ୍ଦୁ ବିନ୍ଦୁ ବର୍ଷା ଜଳରେ ଭିଜି ଝାଉଁଗଛ ।

ସୀମା ବାଡ଼ି ଅତିକ୍ରମ କରି ବାରଣ୍ଡାକୁ ଉଠିବା ଆଗରୁ ଆଉ ଥରେ ପଛକୁ ଚାହିଁ ଭଲ କରି ଦେଖି ନେଲା, ମୃଣାଳ ଅଛି ନା ଚାଲିଗଲାଣି ।

ବର୍ଷା ଯୋଗୁଁ ହୁଏତ ସେ ଦୋକାନ ପାଖରେ ଠିଆହୋଇ ଯାଇଥିଲା । ତାକୁ ଅନୁସରଣ କଲାଭଳି ସାହସ ଆଉ ତା'ର ନାହିଁ । ହୁଏତ ଆଗାମୀ ସାତ ଆଠ ଦିନ ମଧ୍ୟରେ ମୂଳରୁ ପରିମଳଙ୍କ ସହିତ ତା'ର ଦେଖା ହେବ ନାହିଁ । ଏକ ବର୍ଷା ସଜଳ ସଂଧ୍ୟାରେ ଯେ ସୀମା ସମସ୍ତଙ୍କ ଦୃଷ୍ଟି ଏଡ଼ାଇ ଏକନରହତ୍ୟା ଅପରାଧରେ ଅଭିଯୁକ୍ତ ଆସାମୀ ପାଖକୁ ଏକାକିନୀ ଦେଖା କରିବାକୁ ଆସିଥିଲା, ଦେଖିଥିଲେ ମଧ୍ୟ ସେକଥା ସାତ ଆଠ ଦିନ ପରେ କହିବାକୁ ଭୁଲିଯିବ ମୃଣାଳ ।

ଆକାଶରୁ ଅନ୍ଧକାର ଓହ୍ଲାଇ ଆସୁଛି । ସଂଧ୍ୟାର ଛାୟା ପଡ଼ିଛି ଟଗର ଡରାଟ କ୍ରୋଟନ୍ ଗଛର ଡାଳ ପତ୍ରରେ ।

ସୀମା ଧୀରେ ଧୀରେ ବାରଣ୍ଡା ଅତିକ୍ରମ କରି ଘରର ଦରଜାରେ ନକ୍ କଲା । ସୀତାଂଶୁ କ'ଣ କରୁଛନ୍ତି ? ଛଅ ମାସ ପରେ ଅସୁସ୍ଥ ମାଆକୁ ଦେଖିବା ପାଇଁ ପାରୋଲରେ ଆସିଥିବା ଫାଶୀ-ଆସାମୀର ମୁହଁ କିପରି ଦେଖାଯାଉଥିବ - ସୀମା ମନେ ମନେ ଅନୁମାନ କରିବାକୁ ଲାଗିଲା ।

ନା – ମୂଳରୁ କବାଟ ଆଦୌ ଭିତରପଟୁ ବନ୍ଦ ନାହିଁ । ନକ୍ କରିବାର କିଛି ମାନେ ହୁଏନା । ଅନ୍ଧାରରେ ସୁଡ଼ଙ୍ଗ ଭଳି ଗୋଟାଏ ଲମ୍ବା ହଲ୍ ପାର ହୋଇଗଲେ ସୀତାଂଶୁଙ୍କ ଡ୍ରଇଂ ରୁମ୍ । ତା'ପରେ ତାଙ୍କର ବେଡ଼୍ରୁମ୍ ।

ବେଡ ରୁମ୍‌ରେ କ'ଣ କରୁଛନ୍ତି ସୀତାଂଶୁ ?

ଅନ୍ଧକାରାଚ୍ଛନ୍ନ ହଲ୍ ମଧ୍ୟରେ କିଛି ସମୟ ଠିଆ ହୋଇ ରହିଲା ସୀମା । ବୃତ୍ତାକାରରେ ଶୋଇଥିବା ଅଜଗର ନିଦ ଭାଙ୍ଗି ଉଠିଲା ଭଳି ସ୍ମୃତିର ସେଇ କଦାକାର ଦୃଶ୍ୟଟା ହଠାତ୍ ତା'ର ଚେତନାକୁ ଚମକାଇ ଦେଲା ।

ସେ ଚାରିଜଣ ଯାଇଥିଲେ ପିକ୍‌ନିକ୍ କରି ବଣକୁ । ଶାଳପିଆଶାଳର ଅରଣ୍ୟ । ଗୋଟିଏ ବନ୍ୟ ଝରଣା । ସେହିଠାରେ ଜମି ଉଠିଥିଲା ସେମାନଙ୍କର ପିକ୍‌ନିକ୍‌ର ଆସର ।

ସ୍ୱାମୀ ପରିମଳ, ପୂର୍ବତନ ପ୍ରେମିକ ମୃଣାଳ, ଶିଳ୍ପୀ ଶୀତାଂଶୁ ଆଉ ସେ ।

ମୃଣାଳ ସହିତ ତା'ର ଯେ ଏକଦା ଖୁବ୍ ଘନିଷ୍ଠତା ଥିଲା ଏବଂ ତାକୁ ବିବାହ କରିବା ପାଇଁ ମୃଣାଳ ଦିନେ ପାଗଳ ହୋଇ ଉଠିଥିଲା, ଏକଥା କୌଣସି ଦିନ ନିଜ ସ୍ୱାମୀଙ୍କ ପାଖରୁ ଗୋପନ ରଖି ନ ଥିଲା ସୀମା । ଇଚ୍ଛା କରିଥିଲେ ମଧ୍ୟ କଥାଟା ଲୁଚି ରହି ନ ଥାନ୍ତା ।

ପରିମଳ ସହିତ ବିବାହ ପରେ ସେ ଯେ ସୁଖୀ ହୋଇଛି, ଏକଥା କୌଣସି ଦିନ ମୃଣାଳ ସହଜ ଭାବରେ ଗ୍ରହଣ କରିପାରି ନ ଥିଲା । ସେଥିପାଇଁ ନିଜେ ମଧ୍ୟ ଅନ୍ୟତ୍ର ବିବାହ କରି ନ ଥିଲା । ଯେତେଦୂର ସମ୍ଭବ ତାକୁ ଏଡ଼ାଇ ଯିବାକୁ ଚେଷ୍ଟା କରିଥିଲା ସୀମା । କେଜାଣି କାହିଁକି ପିକ୍‌ନିକ୍ କଥା ଉଠିବା ମାତ୍ରେ ପରିମଳ ସାଙ୍ଗରେ ମୃଣାଳକୁ ନେବା ପାଇଁ ଜିଦ୍ ଧରିବସିଲା । ଇଚ୍ଛା ଥିଲେ ମଧ୍ୟ ମନାକରି ନଥିଲା ସୀମା । ସୀତାଂଶୁ ପରିମଳଙ୍କ ବନ୍ଧୁ । ନୀରବ ଶିଳ୍ପୀ । ଭଲ ଛବି ଆଙ୍କନ୍ତି କିନ୍ତୁ ଭଲ ଆଙ୍କନ୍ତି ବୋଲି କେହି କହିଲେ ଲଜ୍ଜାବତୀ ନବବଧୂଟି ଭଳି ଲଜ୍ଜାରେ ମାଟିରେ ମିଶିଯାଆନ୍ତି ।

ହଁ – ତାହାରି ଅନୁରୋଧରେ ହିଁ ସେ ତା'ର ଏକ ଆବକ୍ଷ ଛବି ଆଙ୍କିବା ଆରମ୍ଭ କରିଥିଲେ । କିନ୍ତୁ ଛବିଟା ସଂପୂର୍ଣ୍ଣ ହେବା ଆଗରୁ ସେଇ ରୋମାଞ୍ଚକର ଦୁର୍ଘଟଣା ।

ଗୋଟିଏ ଜିପ୍‌ରେ ସେ ଦୈତ୍ୟପ୍ରାୟ ଲୋକଟା ସେମାନଙ୍କୁ ହୁଏତ ଅନୁସରଣ କରି ଆସିଥିଲା । ଉପଲକ୍ଷ୍ୟ ହରିଣ ଶିକାର । କିନ୍ତୁ ଲକ୍ଷ୍ୟ ଥିଲା ସୀମାର ଯୌବନ ପଲ୍ଲବିତ ଦେହ !

ଲୋକଟା ବନ୍ଧୁକ ଦେଖାଇ ତାକୁ ଜୋର୍‌କରି ଭୋଗ କରିବାକୁ ଚାହିଁଥିଲା । ବନ୍ଧୁକ ନଳି ଉଞ୍ଚାଇ ପରିମଳ, ମୃଣାଳ ଆଉ ସୀତାଂଶୁଙ୍କୁ ସେ ସ୍ଥାନ ଛାଡ଼ି ଚାଲିଯିବାକୁ ନିର୍ଦ୍ଦେଶ ଦେଇଥିଲା । ହିନ୍ଦୀ ସିନେମାର କାହାଣୀର ଦୃଶ୍ୟ ଭଳି ଘଟଣା ।

ଲୋକଟା ଜଣେ ନୃଶଂସ ଜହ୍ଲାଦ ଭଳି କହିଥିଲା – ଓନ୍‌ଲି ଓ୍ୱାନ୍‌ସ । ବାସ୍, ତା'ପରେ

ମୁଁ ଜିପ୍‌ରେ ନେଇ ଏ ସୁନ୍ଦରୀକୁ ମେନ୍‌ରୋଡ୍‌ରେ ଛାଡ଼ିଦେବି– ଯଦି ଜୀବନର ଆଶା ଅଛି – ଚୁପ୍ ଚାପ୍ ଚାଲିଯାଅ–

ଅଣନିଃଶ୍ୱାସୀ ହୋଇ ମୃଣାଳ ପ୍ରଥମେ ଦୌଡ଼ି ପଳାଇ ଆତ୍ମରକ୍ଷା କରିଥିଲା ।

ତା' ପାଖରୁ ଏହାଠାରୁ ଅତିରିକ୍ତ କିଛି ଆଶା କରି ନ ଥିଲା ସୀମା ।

କିନ୍ତୁ ତା'ର ସ୍ୱାମୀ ପରିମଳ ।

ଅସ୍ତଗୋଧୂଳିର ମ୍ଳାନ ଆଲୋକରେ ସୀମା ଲକ୍ଷ୍ୟ କରିଥିଲା, ତା'ର ସ୍ୱାମୀ ଝାଳରେ ଗୋଟିସୁଦ୍ଧା ଗାଧୋଇ ପଡ଼ୁଥିଲେ । "ଆପଣ ଚାଲି ଯାଆନ୍ତୁ – ମୋ ପାଇଁ ଚିନ୍ତା କରନ୍ତୁ ନାହିଁ । ମୋର ଶାରୀରିକ ସତୀତ୍ୱ ଅପେକ୍ଷା ଆପଣଙ୍କ ଜୀବନ ଅଧିକ ମୂଲ୍ୟବାନ ।" – ଏକଥା କହିବା ଆଗରୁ ପରିମଳ ନିର୍ଲ୍ଲଜ ଭାବରେ କହିଲେ– 'ସୀମା । ଡୋଣ୍ଟ୍ ରେଜିଷ୍ଟ୍ – କେବଳ ମାତ୍ର ଥରେ – ମୁଁ କିଛି ମନେ କରିବି ନାଇଁ ।'

ସେ ଲୋକଟା ଅସଭ୍ୟ ଭାବରେ ହିଃ ହିଃ ହୋଇ ହସି ଉଠିଲା ।

ଲଜ୍ଜା, ଘୃଣା, ଅପମାନରେ ସୀମାର ସାରା ଦେହ ଜଳି ଉଠିଥିଲା ।

ପରିମଳ ଚାଲିଗଲେ ।

ଆଉ ଠିକ୍ ସେଇ ସମୟରେ ସୀତାଂଶୁ ।

ଧସ୍ତାଧସ୍ତି, ଫାୟାରିଂ ଶବ୍ଦ, ଆର୍ତ୍ତନାଦ ଭିତରେ ସେ ସଂଜ୍ଞା ହରାଇ ବସିଥିଲା ।

ତା'ପରେ ଡାକ୍ତରଖାନାରେ ତା'ର ଯେତେବେଳେ ସଂଜ୍ଞା ଫେରି ଆସିଲା, ସେ ଦେଖିଲା ତା' ମୁଣ୍ଡ ପାଖରେ ବସିଛନ୍ତି ପରିମଳ । ତା'ର ଶାରୀରିକ ସତୀତ୍ୱ ରକ୍ଷା କରିବାକୁ ଯାଇ ସୀତାଂଶୁ ନରହତ୍ୟା ଅପରାଧରେ ଜେଲ୍‌ଖାନାକୁ ଚାଲାଣ ହୋଇଯାଇଛନ୍ତି ।

ପରିମଳ ଯେତେବେଳେ କହିଲେ – ଉପରେ ଭଗବାନ ଅଛନ୍ତି । ଲୋକଟାକୁ ଠିକ୍ ଶାସ୍ତି ଦେଇଛି ସୀତାଂଶୁ । ତାକୁ ଜେଲ୍‌ଖାନାରୁ ମୁକୁଳାଇ ଆଣିବା ପାଇଁ ଯାହା କିଛି ଖର୍ଚ୍ଚ ହେବ, ମୁଁ କରିବି, ତମର ଯେ ସେ କିଛି କ୍ଷତି କରିପାରି ନାହିଁ–"

ସ୍ୱାମୀଙ୍କ କଥା ଶୁଣି ଆକଣ୍ଠ ଘୃଣାରେ ଆଉ ଥରେ ନୟନ ମୁଦ୍ରିତ କରିଦେଇଥିଲା ସୀମା । ତାଙ୍କ କଥାର ଶେଷ କେଇପଦ ନ ଶୁଣିବା ପାଇଁ ସେ ଇଚ୍ଛା କରି କାନରେ ଆଙ୍ଗୁଠି ଦେଇଥିଲା ।

ପିକ୍‌ନିକ୍‌ରୁ ଫେରିବା ରାସ୍ତାରେ ସେଇ ମୁହୂର୍ତ୍ତ କେତୋଟିର ମହାଭାରତ ତା'ର କଳ୍ପିତ ପୃଥିବୀର ମାନଚିତ୍ରକୁ ପୂରାପୂରି ଅଦଳ ବଦଳ କରି ଦେଇଥିଲା । ଏତେଦିନ ଧରି ସ୍ୱାମୀ ଭାବରେ ଯାହାକୁ ସେ ଭକ୍ତି କରି ଆସିଥିଲା; ତାଙ୍କ ମୁହଁକୁ ଚାହିଁଲା ମାତ୍ରେ ଘୃଣାରେ ତା'ର ମନ ଭରି ଯାଉଥିଲା ।

ନରହତ୍ୟା ଅପରାଧରୁ ସୀତାଂଶୁଙ୍କୁ ମୁକୁଳାଇ ଆଣିବା ପାଇଁ ପରିମଳ ବଡ଼, ଓକିଲ ପିଛା ବହୁ ଅର୍ଥ ଖର୍ଚ୍ଚ କରୁଛନ୍ତି । ହୁଏତ ଆଉ କିଛି ଦିନ ପରେ ସୀତାଂଶୁ ନିର୍ଦ୍ଦୋଷରେ ଖଲାସ ହୋଇଯିବେ । ସବୁ ଠିକ୍ ହୋଇଯିବ । କିନ୍ତୁ ମଣିଷ ଚରିତ୍ର ସଂପର୍କରେ ତା'ର ଯେଉଁ ଧାରଣା ଅଦଳ ବଦଳ ହୋଇଗଲା, ତାହା ଆଉ କୌଣସି ଦିନ ପୂର୍ବ ଅବସ୍ଥାକୁ ଫେରିବ ନାହିଁ ।

ଅସୁସ୍ଥ ମାଆଙ୍କୁ ଦେଖିବା ପାଇଁ ପାରୋଲରେ ଖଲାସ ହୋଇଥିବା ସମ୍ବାଦ ପରିମଳ ହିଁ ତାକୁ ଦେଇଥିଲେ । ଇଚ୍ଛା କରିଥିଲେ ସ୍ୱାମୀଙ୍କ ସହିତ ସେ ତାଙ୍କ ସହିତ ଦେଖା କରିବାକୁ ଆସି ପାରିଥାଆନ୍ତା । ତାଙ୍କୁ ଖଲାସ କରିବା ପାଇଁ ସ୍ୱାମୀ ତା'ର ଅଜସ୍ର ଟଙ୍କା ଖର୍ଚ୍ଚ କରୁଛନ୍ତି । କିନ୍ତୁ ସବୁ ଦାନର ପ୍ରତିଦାନ ଟଙ୍କାରେ ଦେଇ ହୁଏ ନାହିଁ, ଏଇକଥା ବୁଝାଇବା ପାଇଁ ସେ ସ୍ୱାମୀଙ୍କୁ ନ କହି ଏକାକିନୀ ଛୁଟି ଆସିଛି ।

ସୀମା ଅନ୍ଧକାରର ହଲ୍ ଅତିକ୍ରମ କରିଗଲା । ଲ୍ୟାମ୍ପର ଆଲୋକ ଆସୁଛି ସୀତାଂଶୁଙ୍କ ଡ୍ରଇଂରୁମ୍‌ରୁ । ଘର ଭିତରେ କଅଣ କରୁଛନ୍ତି ସୀତାଂଶୁ ?

ଏକ କାୟାହୀନ ଛାୟା ଭଳି ସେଇ ସ୍ୱଚ୍ଛାଲୋକିତ ଡ୍ରଇଂରୁମ୍ ଦ୍ୱାର ମୁହଁରେ ଠିଆହେଲା ସୀମା ।

ଆଶ୍ଚର୍ଯ୍ୟ !

ତା'ର ସେ ଅସଂପୂର୍ଣ୍ଣ ଛବିକୁ ସଂପୂର୍ଣ୍ଣ କରିବା ପାଇଁ ଷ୍ଟୁଲ୍ ଉପରେ ବସି ଲ୍ୟାମ୍ପର ଆଲୁଅରେ କାନ୍‌ଭାସ୍ ଉପରେ ତୂଳୀ ବୁଲାଉଛନ୍ତି ସୀତାଂଶୁ ।

ସୀମା ନିଜର ଚୁଡ଼ି ଝଣ ଝଣ କଲା ।

ସୀତାଂଶୁ ପଛକୁ ଫେରି ଚାହିଁଲେ ଏବଂ ମୃଦୁ ହସି ପଚାରିଲେ-

: ପରିମଳ ବାବୁ ?

: ଆସି ନାହାନ୍ତି । ମୁଁ ଏକାକିନୀ ଆସିଛି । - କଂପିତ କଣ୍ଠରେ ଉତ୍ତରଦେଲା ସୀମା । ଅଳ୍ପଦିନ କେତୋଟି ପାଇଁ ନର୍ସିଂହୋମ୍‌ରେ ନିଜ ମୁମୂର୍ଷୁ ଜନନୀକୁ ଦେଖିବା ଲାଗି ପାରୋଲ୍‌ରେ ଆସିଥିବା ଲୋକଟି ଆତ୍ମମଗ୍ନ ଭାବରେ ତା'ର ଅସଂପୂର୍ଣ୍ଣ ଛବିକୁ ସଂପୂର୍ଣ୍ଣ କରିବାରେ ଲାଗିଛି ।

: ଆପଣ ଆସି ଭଲ କଲେ । ଏ ଛଅ ମାସ ଭିତରେ ଆପଣଙ୍କ ଛବିଟା ମୋ ମନରୁ ପ୍ରାୟ ଅସ୍ପଷ୍ଟ ହୋଇ ଆସିଥିଲା । ତୂଳୀ ଧରି ଯେତେ ଗାର ଟାଣିଲେ ବି ନାଚୁରାଲ୍ ଏଫେକ୍ଟ ଆସୁ ନ ଥିଲା । ଆପଣ ସେ ଚେୟାର୍‌ରେ ବସନ୍ତୁ ତ-

: କିନ୍ତୁ ମୁଁ ତ ମୋ ଛବି ଅଙ୍କାଇବା ପାଇଁ ଆଜି ଏଠାକୁ ଆସିନାହିଁ ।

: ଜାଣେ । ନିଜ ଜୀବନକୁ ବିପନ୍ନ କରି ମୁଁ ଯେ ଆପଣଙ୍କୁ ସେ ଦୁର୍ବୃତ୍ତ କବଳରୁ ରକ୍ଷା କରିଥିଲି; ସେଥିପାଇଁ କୃତଜ୍ଞତା ଜଣାଇବାକୁ ଆସିଛନ୍ତି । କିନ୍ତୁ ସେଇଟା ଆଦୌ ଜରୁରୀ ନୁହେଁ ।

ତାଙ୍କ କଥା ଶୁଣି ସୀମାର ଆଖିକୁ ଲୁହ ଆସିଗଲା ।

ତୂଳୀର ପଛପଟକୁ ଦାନ୍ତରେ କାମୁଡ଼ି ଧରି ସୀତାଂଶୁ ବିଚଳିତ କଣ୍ଠରେ ପ୍ରଶ୍ନ କଲେ - ଆପଣ କାନ୍ଦୁଛନ୍ତି ?

: ନା - କାନ୍ଦୁନି । କେବଳ ଲୁହ ଝରୁଛି ।

: ତା'ର ଅର୍ଥ କ'ଣ ହେଲା ?

: ସବୁ କାନ୍ଦଣାରେ ଶବ୍ଦ ଥାଏ, ଲୁହ ନ ଥାଇ ପାରେ ।

ସୀତାଂଶୁ ସୀମାର କଥା ଶୁଣି ନିସ୍ତବ୍ଧ ଭାବରେ ବସି ରହିଲେ ।

: ମୁଁ ଗୋଟିଏ କଥା ପଚାରିବାକୁ ଏକାକିନୀ ଆପଣଙ୍କ ପାଖକୁ ପଳାଇ ଆସିଛି ।

: ପଚାରନ୍ତୁ ।

: ବନ୍ଧୁକର ନଳୀ ଦେଖି ଜୀବନଭୀରୁ ମୃଣାଳ ଯେତେବେଳେ ପଳାଇଲା; ମୋର ସ୍ୱାମୀ ଯେତେବେଳେ ସତୀତ୍ୱ ଅପେକ୍ଷା ଜୀବନଟା ବଡ଼ ବୋଲି ଉପଦେଶ ଦେଇ ନିଜେ ଚାଲି ଗଲେ, ଆପଣ କାହିଁକି ନିଜ ଜୀବନକୁ ବିପନ୍ନ କରି ସେ ମାଂସାଶୀ ପାଷାଣ୍ଡ ସହିତ ଯୁଦ୍ଧରେ ଲଂଫ ଦେଲେ ?

ସୀମାର ପ୍ରଶ୍ନ ଶୁଣି ସୀତାଂଶୁ ନିମ୍ନ କଣ୍ଠରେ ଉତ୍ତର ଦେଲେ - ଆପଣ ଶାରୀରିକ ସତୀତ୍ୱ ହରାଇ ଥିଲେ ଏ ଛବି ଚିରଦିନ ଅସଂପୂର୍ଣ୍ଣ ରହିଯାଇ ଥାଆନ୍ତା । ଏହା ଏକ ପବିତ୍ର ନାରୀର ଛବି । କଳଙ୍କର କାଳିଛିଟା ଏ ଛବିରେ ଶୋଭା ପାଏ ନାହିଁ । ମିସେସ୍ ଦାସ ! ମୋ ଛବିରେ କେହି କାଳି ଛିଟା ଛିଞ୍ଚି ଦେବାକୁ ଯାଉଛି, ଏକଥା ଭାବିବା ମାତ୍ରେ ମୋ ଭିତରେ ଏକ ପ୍ରତିରୋଧର ଶକ୍ତି ଜାଗି ଉଠିଲା । ମୋର ଭାଗ୍ୟ ଭଲ, ସେ ଲୋକଟାର ଗୁଳି ପ୍ରଥମେ ଲକ୍ଷ୍ୟ ଭ୍ରଷ୍ଟ ହୋଇଗଲା । ତା'ର ବନ୍ଧୁକ ଆସିଗଲା ମୋ ହାତ ମୁଠା ଭିତରକୁ । ଛବିର ପବିତ୍ରତା ରକ୍ଷା ପାଇଗଲା ।

ଛବିର ପବିତ୍ରତା !

ସ୍ୱାମୀ ପାଇଁ ସ୍ତ୍ରୀର ସତୀତ୍ୱ ଅପେକ୍ଷା ଶିଳ୍ପୀ ଲାଗି ଛବିର ପବିତ୍ରତା ବଡ଼ !

ଏଥର ସତକୁ ସତ ଦୁଇ ହାତ ପାପୁଲିରେ ମୁହଁକୁ ଚାପି ଧରି କାନ୍ଦି ଉଠିଲା ସୀମା ।

●

# ରାଇ କିଶୋରୀ

## ରବି ପଟ୍ଟନାୟକ

ମୁଁ ଏକ ଐତିହ୍ୟର କୂର୍ମ ।

ହଜାର ହଜାର ବର୍ଷର ଇତିହାସ, ସଭ୍ୟତା, ସଂସ୍କୃତି ଜ୍ଞାନର ଭାରରେ ମୁଁ ଆଜି ଥୋଡ଼ିଆ ବଳଦ ପରି ଅନୁଭୂତି-ହୀନ-ପ୍ରାଣ ସ୍ପର୍ଶହୀନ ଯାନ୍ତ୍ରିକ ଜୀବଟିଏ ।

ତାରି କ୍ରମାଗତ ଚାପ ଫଳରେ ମୁଁ ବାହାରି ପାରୁନାହିଁ । ଅଥଚ ରହି ପାରୁନି । ଖୋଳପା ଲାଗି ରହିଛି-ଶକ୍ତ ଭାବରେ । ଯେଉଁଟା ଥିଲା ମୋର ରକ୍ଷଣଶୀଳ ବର୍ମ- ସେଇଟା ଏବେ ପାଲଟି ଯାଇଛି ମୋର କାରାଗାରରେ । ଏଇ ସଙ୍କଟର ଯନ୍ତ୍ରଣାରେ ମୁଁ ପ୍ରତିମୁହୂର୍ତ୍ତ କ୍ଷତବିକ୍ଷତ । ବନ୍ଧନକୁ ବନ୍ଧନ ବୋଲି ଜାଣିସାରିବା ପରେ ତା'ଠାରୁ ମୁକ୍ତି ପାଇବାରେ ମୋର ଅସହାୟତା – ଏକ କ୍ରମାଗତ ପ୍ରତିନିୟତର ଯନ୍ତ୍ରଣା ।

ମୁଁ କାହିଁକି ଭଲ ପାଇଲି ରାଧାକୁ । ଭଲ ପାଇବାଟା କ'ଣ ଏକ ବିଡମ୍ବନା – ସଂସ୍କୃତିର – ବୋଝର ? ମୁକ୍ତି ଖୋଜୁଥିବା ଏକ ଅସହାୟ ବ୍ୟକ୍ତି ପ୍ରତି ମୁକ୍ତି ସମ୍ଭାବନାର ମରୀଚୀକାର ନାମ କ'ଣ ପ୍ରେମ ?

ରାଧା, ରାଧା, ରାଇ କିଶୋରୀ ।

କେତେଦିନ ଆଉ ବଇଁଶୀରେ ଘୋଷୁଥିବି ସେଇ ନାଁ ।

ସଂସ୍କୃତିର ତୁଠ ପଥର ଘସି ଘସି କେତେଥର ସେଇ ଘୋଷରା ନାଁଟାକୁ ଡ଼ାକି ଚାଲିଥିବି ? ବହୁତ ଥର ମନେ ହୋଇଛି, ସେଇ ଘୋଷରା ନାଁଟିରେ ଆଉ ପ୍ରାଣ ନାହିଁ, ଆନନ୍ଦ ନାହିଁ, ପୁରୁଣା ପାଞ୍ଜିର ତିଥିପରି ନିର୍ଜୀବ, ନିଃସାଡ । ତଥାପି ସେଇ ପୁରୁଣା ସୁରର ବ୍ୟଞ୍ଜନା ଭିତରେ, ସେଇ ପୁରୁଣା ରାଗିଣୀର ବହୁ ଘୋଷିତ ସ୍ୱର ସଂଯୋଜନା ଭିତରେ ଏକ ଅଦ୍ଭୁତ ମୁକ୍ତିର ସ୍ୱାଦ, କେଉଁଠି କେଜାଣି ଲୁଚି ରହିଥିବା ସାପ ପରି ଫଙ୍ କରି ଡେଇଁ ଉଠି, ଫଣା ଟେକି ନାଚେ – ଯେତେବେଳେ ତାଳ ବେତାଳିଆ ହୋଇଯାଏ, ସେଇ ବେତାଳିଆ ସୁରର ବେଣାବୁଦା ଭିତରୁ । ନିହାତି ଜଣାଶୁଣା ପୁରୁଣା ନିଷ୍ଚିନ୍ତ ଚଲାବାଟରୁ ପାଦ ଖସିଗଲେ – ହଠାତ୍ – ନିହାତି ଆକସ୍ମିକ ଭାବେ ଆଉ ଗୋଟାଏ ବାଟର ସନ୍ଧାନ ମିଳିଯାଇ ପୁଣି ନିମିଷକେ ଉଭେଇଯାଏ । ସେ ବାଟର ନକ୍ସା ନାହିଁ – ସେ ବାଟର

ସନ୍ଧାନ ନାହିଁ । ଅତଳାନ୍ତ ସମୁଦ୍ରର ଭିତରେ ଜାହାଜର ମଙ୍ଗ କଟିଯାଇଥିବା ପାଣି ଉପରର ଦାଗ ପରି । ଅଗନାଗ୍ନି ବନସ୍ତରେ ଭୁଆଁବୁଲା ରାସ୍ତା ପରି । ନୀଳ ଆକାଶର ସୀମାହୀନ ବିସ୍ତୃତି ଭିତରେ ଛାୟାପଥ ପରି । ପୁରୁଣା ନକ୍‌ସା, ପୁରୁଣା ମାନଚିତ୍ରରେ ତା'ର ସନ୍ଧାନ ମିଳେ ନା । ପୁରୁଣା ବାଟର ଅନ୍ଦିକନ୍ଦି ଗଳି ରାଜପଥ ସନ୍ଧାନ କରି ତା'ର ଉପସ୍ଥିତି ମିଳେ ନା । ତଥାପି ସେ ସତ୍ୟ । ଜୀବନର ଅନୁଭବ ପରି ଅସ୍ତିତ୍ୱର ଅନୁଭବ ମଧ୍ୟ ସତ୍ୟ ।

ସବୁବାଟ ହଜିଗଲେ, ସବୁ ଗଳି ଉପଗଳି ରାଜପଥ ଚଲାପଥ ହଜିଗଲେ କ'ଣ ସେଇ ନୂଆବାଟ ଆପଣା ଛାଏଁ ଫୁଟି ଉଠିବ ? କିଏ କହିବ ? କିଏ ଦେଖେଇ ପାରିବ ? ତଥାପି ସେଇ ନିମିଷକର ଦେଖାରେ ସମସ୍ତ ପ୍ରାଣମନ ଉତଲା ହୋଇ ଉଠିଛି ସେଇ ରାସ୍ତାର ସୌନ୍ଦର୍ଯ୍ୟରେ । ତାର ସନ୍ଧାନରେ କେବଳ ଧନ୍ଦାଳି ହୋଇ ଚାଲିଛି ବର୍ଷକୁ ବର୍ଷ ।

ସେଇଥିପାଇଁ ସେଇ ପୁରୁଣା ସ୍ୱରର ରାଗିଣୀର ରାସ୍ତା ଧରି ଧରି ଆଗେଇ ଯାଉଛି । ଘୋଷରା ରାଗିଣୀର ଚଉରା ଚାରିପଟେ ବୁଲୁଛି ଯେ ବୁଲୁଛି– ଚକାଭଉଁରୀ । ଯଦି କେବେ ସେଇ ଚକାଭଉଁରୀ ଖେଳୁ ଖେଳୁ ହଠାତ୍ ଆକସ୍ମିକ ଭାବେ ଛିଟିକି ପଡ଼େ – ସେଇ ରାସ୍ତା ଉପରକୁ ।

ଜାଣିବାରେ ସବୁ ଜଣା ପଥ । କିନ୍ତୁ ସେଇ ଅଜଣା ଅଶୁଣା ପଥକୁ ସନ୍ଧାନ କରି କରି ପହଞ୍ଚି ପାରିବି ବୋଲି ମନେ ହୁଏନା । କାଳେ ଯଦି – ଆକସ୍ମିକ ଭାବରେ । ହଠାତ୍ ।

ରାଧା । ନୀଳ ଯମୁନାର କୂଳେ କୂଳେ ତମାଳକୁଞ୍ଜର ସବୁଜଶ୍ରୀର ଶାନ୍ତ ସୁଷମା ଭିତରେ ପ୍ରସ୍ଫୁଟିତ ଶିହରିତ ପ୍ରଥମ କଦମ୍ବ । ତୋର ନୂପୁର ନିକ୍ୱଣିତ ନମ୍ର କୋମଳ–ଲାକ୍ଷା ରଞ୍ଜିତ ପଦଯୁଗଳର ସଲଜ୍ଜ ପଦପାତର ରୋମାଞ୍ଚ ସତେ କ'ଣ କେବେ ଦେଖି ପାରିବି ନାହିଁ । ପାରିବି ନାହିଁ ଦେଖି ତୋର "ଆଧ ବଦନେ ହାଁସି, ଆଧ ଆଁଚର ଖସି, ଆଧ ହିଁ ନୟାନ ତରଙ୍ଗ"ର ଚିର ସ୍ନିଗ୍ଧ ରୂପ । କେବେ କ'ଣ ନାଚିବୁ ନାହିଁ ମୋର ପ୍ରେମର ବଇଁଶୀର ତାଳେ ତାଳେ ମତୁଆଲା ହୋଇ, ପ୍ରେମ ବିଭୋର ହୋଇ । ରାତ୍ରିର ସଙ୍ଗୋପନ ମୁହୂର୍ତ୍ତରେ କେବେ କ'ଣ ଆସିବୁ ନାହିଁ ମୋର ବଇଁଶୀ ସୁରର ଆଲୁଅରେ ପଥ ବାରି ବାରି ଅଭିସାରିକାର ବେଶରେ । କେବେ କ'ଣ ତୋତେ ବୁକୁ ଭିତରେ ବାନ୍ଧିରଖି ଅନୁଭବ କରି ପାରିବି ନାହିଁ ହଜିବାର ସଂପୂର୍ଣ୍ଣତା – ନିଜକୁ ବୁଡାଇ ଦେବାର, ମଜେଇ ଦେବାର, ଦ୍ୱୈତ ଭିତରେ ଅଦ୍ୱୈତ ହେବାର ବିଚିତ୍ର ଅନୁଭୂତିକୁ । ଯୋଉ ପାଇବାରେ ଜ୍ୱାଳା ନାହିଁ– ବନ୍ଧନ ନାହିଁ, ମୁକ୍ତି ନାହିଁ – ସେଇ ଚିରନ୍ତନ ପାଇବାର ମଧୁର ପ୍ରାପ୍ତି ଅପ୍ରାପ୍ତିର ନିବିଡ଼ ଅନୁଭବକୁ ।

"ଜନମ ଅବଧି ହମ ରୂପ ନିହାରିନୁ
ନୟନ ନା ତପପିତ ଭେଲ
ଯୁଗ ଯୁଗ ଧରି ହିୟେ ହିୟା ରାଖନୁ
ତବୁ ହିୟା ଜୁଡନ ନା ଗେଲ ।"

ହେ ମୋର କୂର୍ମ ଜୀବନର ମୁକ୍ତିର ପଥ ।

ହେ ମୋର ଅଜଣା ବାଟ ।

ହେ ମୋର ନୂତନ ସ୍ୱର !

ମୁଁ ତୋତେ ପଲକ ମାତ୍ରେ ଦେଖିଛି । ସେଇ ପଲକର ଦେଖା। ମନେ ହୁଏ ସ୍ୱପ୍ନ ପରି । ମନେହୁଏ ଭ୍ରମ । ତଥାପି ସେଇ ଅନୁଭୂତିକୁ ତ ମୁଁ ଅସତ୍ୟ ବୋଲି ଅସ୍ୱୀକାର କରି ପାରିବି ନାହିଁ । ତୋତେ ଦେଖିଛି- ଅଥଚ୍ ଦେଖି ନାହିଁ । ତୋତେ ପାଇଛି...ଅଥଚ ପାଇନି । ତୋତେ ଅନୁଭବ କରିଛି ଅଥଚ ଅନୁଭବ କରି ପାରିନି ।

ମୁଁ ତୋତେ ଭଲପାଏ । ନା-ନା ମୁଁ ନୁହେଁ । ମୋର ସମସ୍ତ ଅସ୍ତିତ୍ୱ-ସମସ୍ତ ସତ୍ତା ହିଁ ତୋର ଭଲ ପାଇବା । ଏକ ବିଖଣ୍ଡିତ ଚେତନା-ନାମହୀନ-ଗୋତ୍ରହୀନ-ଜାତିହୀନ-ପରିଚୟହୀନ ଏକ ଚେତନା-ଭଲ ପାଇବାର । ଏକ ବିଭକ୍ତ ପରମାଣୁ ପରି ପ୍ରବଳ ରୋଷରେ ଘୂରି ବୁଲୁଛି । ଆଉ ଏକ ପରମାଣୁ ସହିତ ବିଲୀନ ହେବାକୁ - ନିଃଶେଷ ହେବାକୁ ଚିରନ୍ତନ ଭାବରେ ସ୍ୱତନ୍ତ୍ର ସତ୍ତାକୁ ଲୋପ କରିଦେବାକୁ ।

X X X X

"କିଏ, କିଏ ?"

ଶ୍ୟାମାନନ୍ଦ ଦେବ-ଗୋସ୍ୱାମୀ ।

ସାତବର୍ଷର ପିଲାଟିଏ ।

"ଆସ, ଆସ ସାନବାବୁ ।"

ଖୋଳ କରତାଳ ବାଜି ଉଠିଲାଣି । ଗିନିର ରିଣିଝିଣି ଝଙ୍କାର । ଚନ୍ଦନ, ଧୂପ ଧୂଣାର ଗନ୍ଧ ବିଚ୍ଛୁରିତ ହେଉଛି ଚାରିଆଡ଼େ । ନିର୍ମଳ ନୀଳ ଆକାଶରେ ପୂର୍ଣ୍ଣଚନ୍ଦ୍ରର ଜ୍ୟୋସ୍ନା ଏଇ ସୌରଭରେ ଭରି ହୋଇ ବସିଯାଇଛି, ଅଗଣାରେ ଚଉତରାରେ, ରାଧାକୃଷ୍ଣ ମନ୍ଦିରର ବେଢ଼ାରେ । ଝୁଲଣ ପୂର୍ଣ୍ଣିମା ପୂଜା ସରି ଆସିଲାଣି । ଆରତିର ଘଣ୍ଟା ଧ୍ୱନି । ଏଥର ଲୀଳା କୀର୍ତ୍ତନ କରିବେ ପ୍ରସିଦ୍ଧ କୀର୍ତ୍ତନିଆ ନିମାଇଁ ଚାନ୍ଦ ବାବାଜୀ ।

ଅଗଣାରେ ଲୋକଙ୍କ ଭିଡ଼ । ଆଗରେ ସତରଞ୍ଜି ଉପରେ ମୋଟା ଗାଲିଚା । ତା' ଉପରେ ଧଳା ଚଦର ଓ ବଡ଼ ବଡ଼ ମାଣ୍ଡି । ମାଣ୍ଡି ଉପରେ ଭରା ଦେଇ ବସିଛନ୍ତି ବାବୁ ରାଧା ଚରଣ ଦେବ ଗୋସ୍ୱାମୀ । କରଣ ବୈଷ୍ଣବ । କେଉଁ ପୁରୁଷ ଅମଳରୁ ରାଧା ଚରଣଙ୍କ ପୂର୍ବ ପୁରୁଷ ହଠାତ୍ ବୈଷ୍ଣବ ଧର୍ମ ଗ୍ରହଣ କରି "ପଟ୍ଟନାୟକ"ରୁ ଦେବ ଗୋସ୍ୱାମୀ ପରିବର୍ତ୍ତିତ ହୋଇ ଯାଇଥିଲେ ତା'ର ଇତିହାସ ନାହିଁ । କିନ୍ତୁ ସେଇ ଦିନଠାରୁ ଚଳି ଆସିଛି ଏଇ ପ୍ରଥା । ରାଧା କୃଷ୍ଣଙ୍କ ବିଗ୍ରହ ସ୍ଥାପନା ହୋଇଛି । ପ୍ରତିଦିନ ମନ୍ଦିରରେ ପୂଜା ଅର୍ଚ୍ଚନା ପାଇଁ ଜମି ଖଞ୍ଜା ହୋଇଛି । ସକାଳୁ ଓ ସଞ୍ଜେ ମନ୍ଦିରର ପ୍ରସାଦ ନ ପାଇଲା ଯାଏଁ କେହି ଜଳ ସ୍ପର୍ଶ କରିବେ ନାହିଁ - ଏଇ ପ୍ରଥା ଚାଲି ଆସିଛି ।

ରାଧା ଚରଣ । ବିଶାଳକାୟ ଦେହ । ତହୁଁ ବିଶାଳ ଉଦର । ବେକରେ ତୁଳସୀକଣ୍ଠି । ଛୋଟ ଛୋଟ ବାଳ । ଠିକ୍ ନଣ୍ଡା ହେଲା ପରି । ତେବେ ଚୁରକି ନାହିଁ । କାନ୍ଧରେ ଗେରୁଆ ଗାମୁଛା । ରୂପା ବଟୁଆରେ ପାନ । ସାମ୍ନାରେ ପିକଦାନୀ ।

ନିମାଇଁ ଚନ୍ଦ ବାବାଜୀଙ୍କ କଣ୍ଠରେ ଯାଦୁ । କୀର୍ତ୍ତନର ସ୍ୱର ଯେମିତି ଚନ୍ଦ୍ରିକାର ଆଲୋକ ରଶ୍ମିର ପଥ ଧରି ଧରି ଉପରକୁ ଉଠି ଲୀନ ହୋଇଯାଉଛି । ରାଧାଙ୍କର ବିଗ୍ରହ-କଳଙ୍କ-ଅପମାନ-ସବୁ ଯେମିତି ନିଜର ଅପମାନ । ଭାବାଶ୍ରୁରେ ନୟନ ଓ ଗଣ୍ଡଦେଶ ସିକ୍ତ । କଣ୍ଠ ଗଦ୍‌ଗଦ । ସେଇ ସ୍ୱରର ଯାଦୁକରୀ ସ୍ପର୍ଶ ଯେମିତି ସମସ୍ତଙ୍କୁ ସେଇ ମୁହୂର୍ତ୍ତ ପାଇଁ ମାଟିର ପୃଥିବୀରୁ ଉଠେଇ ନେଇ, ନିଜ ନିଜର ବ୍ୟକ୍ତିଗତ ଆଶା ଆକାଂକ୍ଷା, କଳି କନ୍ଦଳକୁ ନିଶ୍ଚିହ୍ନ କରିଦେଇ ରାଧାକୃଷ୍ଣ ପ୍ରେମ ବିରହ, ମାନ ଅଭିମାନର ଏକ ପ୍ରବଳ ସତ୍ତା ଭିତରେ ଲୀନ କରି ଦେଇଛି । ସେଇ ମୁହୂର୍ତ୍ତରେ ବ୍ୟକ୍ତିଗତ ସତ୍ତା ଲୋପ ପାଇଯାଇ ଏକ ସାମଗ୍ରୀକ ସତ୍ତାରେ ନିଶ୍ଚିହ୍ନ ହୋଇଯାଇଛି । ସବୁରି ଆଖିରେ ଅଶ୍ରୁ । ସବୁରି ପ୍ରାଣରେ ସ୍ପନ୍ଦନ । ପ୍ରତ୍ୟେକେ ଜଣେ ଜଣେ ରାଧା ଓ କୃଷ୍ଣ । ନିଜ ନିଜର ନାମ ଗୋତ୍ର ପରିଚୟ ସମସ୍ତେ ଭୁଲି ଯାଇଛନ୍ତି ସେଇ ମୁହୂର୍ତ୍ତରେ । ଅଦ୍ଭୁତ ଅନିର୍ବଚନୀୟ ଆଶ୍ଚର୍ଯ୍ୟ ପରିସ୍ଥିତି । ଏ ଅସମ୍ଭବ ସମ୍ଭବ କାହାଯୋଗୁଁ ? ନିମାଇଁ ଚନ୍ଦ ବାବାଜୀର ସ୍ୱର ନା ପ୍ରତ୍ୟେକଙ୍କ ଅନ୍ତର ଭିତରେ ସଯତ୍ନେ ଲୁକ୍କାୟିତ ସେଇ "ରାଧା କୃଷ୍ଣ" ବିଶ୍ୱାସର ଫଲ୍‌ଗୁ ଧାରାର ରମଣୀୟ ଅଭିବ୍ୟକ୍ତିରେ ।

ବାବୁ ଶ୍ୟାମାନନ୍ଦ ଦେବ ଗୋସ୍ୱାମୀ । ସ୍ତବ୍‌ଧ, ନିର୍ବାକ, ଏକ ଆକସ୍ମିକ, ଅନାପେକ୍ଷିତ, ସ୍ୱରର ଅନୁଭବରେ ମୂକ । ସାତବର୍ଷର ବାଳକ । ସେ ପ୍ରେମ ବୁଝେନା, ଅଭିମାନ ବୁଝେନା, ବିରହ ବୁଝେନା, ଅଭିସାର ବୁଝେନା-ଯୌନ ବୁଝେନା କେଳି ବୁଝେନା-ଅଥଚ ରାଧାର ବିରହରେ ଆଖିରୁ ତା'ର ଲୁହ ଝର ଝର ହୋଇ ବହିଯାଉଛି । ସମଗ୍ର ସତ୍ତା ଦେଇ ସେ ଅନୁଭବ କରୁଛି ସେଇ ତୀବ୍ର ବିରହର ଜ୍ୱାଳାକୁ । ରାଧାର ଅନିର୍ବଚନୀୟ ରୂପ ହଠାତ୍ କରି ରୂପ ପରିଗ୍ରହ କରିଛି ତାରି କଳ୍ପନା ଭିତରେ । ଗୌରବର୍ଣ୍ଣା, କ୍ଷୀଣକଟୀ, ତନ୍ୱୀ କିଶୋରୀ । ବାସ୍ତବତାର ସବୁ ରୂପଠାରୁ ସେ ଅନନ୍ୟା-ଆତ୍ମବିଭୋର ହୋଇ ସେ କେତେବେଳେ ରାଧାକୁ ତା'ର କୁନି ଭଉଣୀଟି ପରି କୋଳରେ ଜାକି ନେଇ ବୁଝେଇଛି-କୃଷ୍ଣଟା ବଡ଼ ଦୁଷ୍ଟ । ତୁ ତା ପାଖକୁ ଆଉ ଯାଆନା । କେତେବେଳେ ଖେଳ ସଙ୍ଗୀ ପରି ତା' ଆଖିରୁ ଲୁହ ପୋଛି ଦେଇ କହୁଛି- ଛି ଛି, ଏତେ ମାନ କରନ୍ତି ନାହିଁ ।

ସେଇ ମୁହୂର୍ତ୍ତରେ ବାବୁ ଶ୍ୟାମାନନ୍ଦଙ୍କ ଆଖି ଫୁଟିଗଲା । ପୃଥିବୀର ସମସ୍ତ ନାରୀ ତାଙ୍କର ବିଭିନ୍ନତା ହଜେଇ ଦେଇ ପ୍ରତିବିମ୍ବିତ ହୋଇ ଉଠିଲେ ଗୋଟିଏ ନାରୀ ସତ୍ତାରେ - ରାଇକିଶୋରୀର ବେଶରେ । ●

# ବନ୍ଧୁ

## ବିଜୟକୃଷ୍ଣ ମହାନ୍ତି

ଚାକିରିରୁ ଅବସର ନେଇ ଭୁବନେଶ୍ୱରରୁ ପୁରୀ ଫେରିଆସି ନିଜର ପୈତୃକ ବାସଭବନରେ ଅବସ୍ଥାନ କରିବା ପରେ ବି ବିଭିନ୍ନ କାର୍ଯ୍ୟୋପଲକ୍ଷେ ମୋତେ ପ୍ରତି ମାସରେ ଥରେ ଦୁଇ ଥର ଭୁବନେଶ୍ୱର ଯିବାକୁ ପଡ଼େ । ସେଠାର ଏକାଧିକ ସାହିତ୍ୟ ସଂସ୍ଥା ସହ ମୁଁ ସମ୍ପୃକ୍ତ । ମୋର କେତେ ଖଣ୍ଡି ଗଳ୍ପ ପୁସ୍ତକର ପ୍ରକାଶକ ହେଉଛନ୍ତି ଭୁବନେଶ୍ୱରସ୍ଥ ଏକାଧିକ ପୁସ୍ତକ ପ୍ରତିଷ୍ଠାନ, ସେମାନଙ୍କ ସଙ୍ଗେ ଯୋଗାଯୋଗ ରକ୍ଷା କରିବାକୁ ପଡ଼େ । ଏତଦ୍‌ବ୍ୟତୀତ ଅନ୍ୟାନ୍ୟ ପ୍ରୟୋଜନ ବି ରହିଚି । ତେଣୁ ଭୁବନେଶ୍ୱର ସଙ୍ଗେ ସମ୍ପର୍କ ଅବିଚ୍ଛିନ୍ନ ରହିବା ସ୍ୱାଭାବିକ ।

ସେଥର ଭୁବନେଶ୍ୱରରେ କାମ ସରୁସରୁ ଡେରି ହୋଇଗଲା । ରାତି ସାଢ଼େ ନଅଟା ବେଳେ ପୁରୀଗାମୀ ଶେଷ ବସ୍‌ରେ ମୋତେ ପ୍ରତ୍ୟାବର୍ତ୍ତନ କରିବାକୁ ପଡ଼ିଲା । ପୁରୀରେ ପହଞ୍ଚିବା ବେଳକୁ ରାତି ସାଢ଼େ ଏଗାର ।

ବଡ଼ ଡାକ୍ତରଖାନା ନିକଟରେ ବସ୍‌ରୁ ଓହ୍ଲାଇ ଅନାଇଲା ବେଳକୁ ବଡ଼ ଦାଣ୍ଡ ପ୍ରାୟ ଶୂନ୍ୟ । ଦୁଇ ତିନିଖଣ୍ଡି ରିକ୍ସା ଏପଟ ସେପଟ ହେଉଛନ୍ତି, ମାତ୍ର ଡାକିଲେ ରିକ୍ସାବାଲାମାନେ ଶୁଣୁ ନାହାନ୍ତି ।

କେବଳ ମୁଁ ନୁହେଁ, ମୋ ପରି ପାଞ୍ଚ ଛଅ ଜଣ ଯାତ୍ରୀ ରିକ୍ସା ଅପେକ୍ଷାରେ ଠିଆ ହୋଇଥିଲେ । ମାତ୍ର ରିକ୍ସା କାହିଁ ?

ମୋ ହାତରେ ତ କେବଳ ଆଟାଚିଟି ଅଛି । ତେଣୁ ଚାଲିକରି ଯିବି ବୋଲି ମନେ ମନେ ସିଦ୍ଧାନ୍ତ ନେଲି ।

ଲବଣିଖିଆ ଛକ ପାଖରେ ଆମ ଘର, କେତେ ବା ଦୂର ! ଗୋଟିଏ ଭୟ କେବଳ ତିନି ହଜାର ଟଙ୍କା ଅଛି ଆଟାଚି ଭିତରେ । ନିର୍ଜ୍ଜନ ରାସ୍ତା, କିଛି ଗୋଟାଏ ଦୁର୍ଘଟଣା ଘଟିଯିବା ଆଦୌ ବିଚିତ୍ର ନୁହେଁ ।

ତଥାପି ନିର୍ଭୟ ହୋଇ ଅଗ୍ରସର ହେଲି, ମନତଳେ ଅଯଥା ଆଶଙ୍କାମାନଙ୍କୁ ସ୍ଥାନ ଦେଲେ ସେମାନେ ପଛକୁ ହିଁ ଟାଣିବେ ।

ଦରଜି ପୋଖରୀ ଛକ ପାଖେ ପହଞ୍ଚିଛି, ଖଣ୍ଡିଏ ରିକ୍ସା ପଛରୁ ଆସି ପହଞ୍ଚିଗଲା

ମୋ ପାଖେ ।

"ବାବୁ କୁଆଡ଼େ ଯିବେ" ରିକ୍ସାବାଲାର କଣ୍ଠସ୍ୱର, ମୁଁ ରହିଯାଇ ତାକୁ ଅନାଇ କହିଲି, "ଲବଣିଖିଆ ଛକ ।"

ମନ ମୋର ଖୁସି ହୋଇ ଯାଇଛି । ରାସ୍ତାପ୍ରାୟ ଅନ୍ଧାର, ଷ୍ଟ୍ରିଟ୍‌ଲାଇଟ୍ ଆଲୋକ ନିଷ୍ପ୍ରଭ ।

ଶୀତର ପ୍ରକୋପରୁ ରକ୍ଷା ପାଇବାକୁ ରିକ୍ସାବାଲା ମୁଣ୍ଡରେ ଓ ମୁହଁରେ ଗାମୁଛା ଗୁଡ଼ାଇଛି ।

ରିକ୍ସାବାଲା ନିଜ ସିଟ୍‌ରୁ ଓହ୍ଲାଇ ପଡ଼ିଛି ।

"କେତେ ନେବୁ ?" ମୁଁ ପଚାରିଲି ।

"ଯାହା ଦେବେ" ସେ ଉତ୍ତର ଦେଲା ।

ଭଡ଼ା ନ ଛିଡ଼ାଇ ରିକ୍ସାରେ କେବେ ବସେନି ।

"ଦୁଇ ଟଙ୍କା ଦେବି ।"

"ବସନ୍ତୁ ।"

ମୁଁ ରିକ୍ସାରେ ଉଠି ବସିଲି ।

ଲବଣିଖିଆ ଛକ ପାରି ହୋଇଯିବା ପରେ ଆମ ଘର ଆସିଯିବାରୁ ମୁଁ ରିକ୍ସା ଅଟକାଇବାକୁ କହିଲି ।

ସେ ରିକ୍ସା ରୋକି ତା' ସିଟ୍‌ରୁ ଓହ୍ଲାଇ ପଡ଼ିଲା ।

ଆମ ଘରପାଖଟା ବେଶୀ ଅନ୍ଧାର । ମୁଁ ମନିପର୍ସରୁ ଦୁଇଟି ଟଙ୍କା ବାହାର କରି ତା' ହାତକୁ ବଢ଼ାଇ ଦେଇ ପାହାଚରେ ଘର ପିଣ୍ଡା ଉପରକୁ ଉଠିବାକୁ ଉଦ୍ୟତ ହେଉଛି, ହଠାତ୍ ରିକ୍ସାବାଲା ପଛରୁ ଡାକିଦେଲା, "ବିଜିବାବୁ ।"

ଚମକି ପଡ଼ି, ଫେରି ଅନାଇ ଦେଲି ।

"ଅନ୍ଧାରରେ ଚିହ୍ନିପାରିଲେନି ମୋତେ ? ମୁଁ ପରା ଗୋବିନ୍ଦା । ସାଙ୍ଗ ହୋଇ ପଢୁଥିଲେ ଆମେ, ପଞ୍ଚମ ଶ୍ରେଣୀରୁ ପଢ଼ା ଛାଡ଼ି ଚାଲି ଆସିଲି । ପାଠ ତ ମୋ ହାତରେ ହେଲାନି । ସେଥିପାଇଁ ରିକ୍ସା ଟାଣୁଛି ।"

ବିସ୍ମୟରେ ମୁଁ ବିମୂଢ଼ ହୋଇଯାଇଛି ।

ଅତୀତର ଦ୍ୱାର ହଠାତ୍ ଖୋଲିଗଲା ।

ଗୋବିନ୍ଦା ମୋର ଲୋୟର୍ ପ୍ରାଇମେରୀ ସ୍କୁଲ୍‌ର ସାଥୀ ଥିଲା । ଭାରି ଦୁଷ୍ଟ ଥିଲା ସେ । ମୋତେ କିନ୍ତୁ ଖୁବ୍ ଭଲ ପାଉଥିଲା, ତାଙ୍କ ବାରି ଆମ୍ବଗଛରୁ ଆମ୍ବ ଆଣିଥାଏ ମୋ ପାଇଁ । ସାଙ୍ଗ ହୋଇ ଖାଉ ।

ମୁଁ ଫେରିଆସି ଗୋବିନ୍ଦା ପାଖେ ଠିଆହେଲି । କାହିଁ କେଉଁ ପିଲା ଦିନେ ଦେଖା ହୋଇଥିଲା, ଏବେ ତାକୁ ଦେଖୁଛି ଗୋଟିଏ ଯୁଗପରେ, ସେ ବୁଢ଼ା ହୋଇଗଲାଣି । ଚରମ

ଦାରିଦ୍ର୍ୟରେ କେତେବେଶୀ ମ୍ଳାନ ଓ ବିବର୍ଣ୍ଣ ହୋଇଯାଇଛି ସେ । ତା ଦେହରେ ଥିବା ଫଟା କାମିଜ ଓ ଚିରାଲୁଗା ମୋର ଦୃଷ୍ଟି ଏଡ଼ାଇ ଯାଇ ନ ଥିଲା ।

ଗୋବିନ୍ଦାକୁ ହଠାତ୍ ଚିହ୍ନି ପାରି ନ ଥିବା ହେତୁ ନିଜକୁ କାହିଁକି ଭାରି ଦୋଷୀଦୋଷୀ ମନେହେଲା । ଏତେଦିନ ପରେ ସେ ତ ପୁଣି ମୋତେ ଚିହ୍ନି ପାରିଲା ।

"ଚାକିରି ସରିବା ପରେ ତମେ ପୁରୀ ଆସିଗଲଣି ମୁଁ ଜାଣେ । ଏଇବାଟେ ରିକ୍ସା ନେଇ ଯିବାବେଳେ ତମ ଘରକୁ ଅନାଏ । ପିଲାଦିନେ ଏଠି କେତେ ଫିଷ୍ଟ୍ କରିଛେ । ତମ ବୋଉ କେତେ ଭଲ ପାଉଥିଲେ ମୋତେ ।" ଗୋବିନ୍ଦାର କଣ୍ଠରେ ଅନେକ ଆବେଗ ।

"ସବୁ ମୋର ମନେ ଅଛି" ମୁଁ ବାଷ୍ପାଚ୍ଛନ୍ନ କଣ୍ଠରେ କହିଲି ।

"ଆମରି ସାଙ୍ଗ ଶିବ ପୁରାର କେତେବଡ଼ ଓକିଲ ଏବେ, ପିଲାଦିନେ କେତେ ଗରିବ ଥିଲେ । ମୋଚିସାହି ଛକରେ କେତେବଡ଼ କୋଠା ତାଙ୍କର । ଆମରି ସାଙ୍ଗ ସୀତାକାନ୍ତ, ପୂର୍ଣ୍ଣାନନ୍ଦ, ବଟକୃଷ୍ଣ ଆଜି କେତେ ବଡ଼ ବଡ଼ ଅଫିସର । ମୁଁ ସେମାନଙ୍କୁ କେବେ କେବେ ଦେଖେ । ସେମାନେ ମୋତେ ଚିହ୍ନି ନ ଚିହ୍ନିଲା ଭଳି ମୁହଁ ଫେରାଇ ନିଅନ୍ତି । ସେମାନଙ୍କର ଓଜନ କେତେ, ମୁଁ ତ ନିକୁଛିଆ ରିକ୍ସାବାଲାଟେ । ଗୋବିନ୍ଦାର କଣ୍ଠସ୍ୱର ଅଭିମାନରେ ଭାରି ହୋଇଉଠିଛି ।

"ତମକୁ କିନ୍ତୁ ଦେଖି ଦେଇ କେମିତି ମନେହେଲା ତମେ ଏମାନଙ୍କ ପରି ବଦଳି ଯାଇନ । ସେଥିପାଇଁ ତ ଡାକିଲି" ଗୋବିନ୍ଦାର କଣ୍ଠସ୍ୱର ଥରି ଉଠିଛି ।

"ମୁଁ ବଦଳିନି ବୋଲି ତୁ ଜାଣିଲୁ କେମିତି ?" ମୁଁ କୌତୂହଳୀ କଣ୍ଠରେ ପ୍ରଶ୍ନ କଲି ।

"ତମକୁ ମୁଁ ଯାହା ଭାବିଥିଲି, ତାହା ତ ଏକଦମ୍ ଠିକ୍ । ମୋ ସଙ୍ଗେ ତ ଠିଆ ହୋଇ କଥା କହୁଛ । ମନ ବୁଝି ଏମିତି କଥା କହନ୍ତି କେତେ ଜଣ ?" ଗୋବିନ୍ଦାର କଣ୍ଠସ୍ୱର ଆବେଗମୟ ହୋଇ ଉଠିଛି ।

ମୁଁ ହଠାତ୍ ଗୋବିନ୍ଦାର ବି' ହାତ ମୋ ହାତ ମୁଠାରେ ଚାପି ଧରିଲି, "ମୁଁ ତ 'ବିଜି ବାବୁ' ନୁହେଁ, ତୋର ପିଲା ଦିନର ସେଇ 'ବିଜି ।' ତୁ ବୋଲି ହିଁ ସମ୍ବୋଧନ କର ମୋତେ । 'ତମେ' କହି ମୋତେ କାହିଁକି ଦୂରେଇ ଦେଉଛୁ ?"

"ସେମିତି ଆଉ ଡାକି ପାରିବିନି" ଗୋବିନ୍ଦା ଆଖିରୁ କେତେ ଠୋପା ଲୁହ ମୋ ହାତ ଉପରେ ଖସି ପଡ଼ିଲା ।

"କାହିଁକି ପାରିବୁନି ?" ମୁଁ ବ୍ୟାକୁଳ କଣ୍ଠରେ ପ୍ରଶ୍ନ କରିଉଠିଲି ।

କେମିତି ମ୍ଳାନ ହସ ଟିକିଏ ହସି ଗୋବିନ୍ଦା ମୋ ହାତମୁଠାରୁ ତା' ହାତ ଧୀରେ ଧୀରେ ଖସାଇ ନେଇ ବାଷ୍ପାଚ୍ଛନ୍ନ କଣ୍ଠରେ କହିଲା "ସବୁ କଥା କ'ଣ ବୁଝାଇ କହି ହୁଏ ?"

ଗୋବିନ୍ଦା ରିକ୍ସା ନେଇ ଚାଲି ଗଲାଣି, ଅଥଚ ମୁଁ ସ୍ଥାଣୁ ହୋଇ ଠିଆ ହୋଇ ରହିଚି ।

# ମିଷ୍ଟର ବତୀବାଲା ଓ କାଦର ଖାଁ

ଇନ୍ଦିରା ଦାଶ

ଅଳ୍ପଦିନ ତଳେ ମିଷ୍ଟର ଜେ.ଇ. ବତୀବାଲା, ଖଡ଼ଗପୁର ଡିଭିଜନ୍‌ର ନୂତନ ମଣ୍ଡଳ ଅଧ୍ୟକ୍ଷ ଭାବେ ଭାରଗ୍ରହଣ କରିଛନ୍ତି । ତାଙ୍କ ବିଷୟରେ ଏଠାକାର କର୍ମଚାରୀମାନେ କିଛି ଜାଣନ୍ତି ନାହିଁ । ସେ ପୂର୍ବରୁ ଦକ୍ଷିଣ ପୂର୍ବ ରେଳବାଇରେ କେବେ କାମ କରି ନଥିଲେ । ପୂର୍ବ ଭାରତରେ ଏଇଟା ତାଙ୍କର ପ୍ରଥମ ପୋଷ୍ଟିଙ୍ଗ୍ । ଏଠାକାର କର୍ମଚାରୀ, ସେମାନଙ୍କର ଚାଲିଚଳନ, ଏହି ଅଞ୍ଚଳର ଭୌଗୋଳିକ ସ୍ଥିତି ଓ ପରିବେଶ ତାଙ୍କ ପାଇଁ ସମ୍ପୂର୍ଣ୍ଣ ଅପରିଚିତ । ତାଙ୍କର ଏହି ନୂତନ ପଦର ନିଯୁକ୍ତି ନିର୍ଦ୍ଦେଶ ଆସିଲାବେଳେ ତାଙ୍କର ଜଣେ ବନ୍ଧୁ ମିଷ୍ଟର ଜୋଗ୍ ତାଙ୍କୁ କହିଥିଲେ, "ଭାଇ, ଦକ୍ଷିଣ-ପୂର୍ବ ରେଲ୍‌ୱେରେ କାମ କରିବା ଭାରି କଷ୍ଟ । କାମର ପ୍ରେସର୍ ବହୁତ ବେଶୀ, ଷ୍ଟାଫ୍‌ଙ୍କ ସହଯୋଗ କମ୍ । ସବୁ କଥାରେ ଧାରଣା ଓ ଆନ୍ଦୋଳନ । ଲୋକଗୁଡ଼ା ସ୍ନେହୀ ଓ ପରୋପକାରୀ ସତ, କିନ୍ତୁ ବଡ଼ ଅଳସୁଆ ଓ ଠକ ମଧ୍ୟ । ମୁଁ ନୂଆ ନୂଆ ଚାକିରି ଆରମ୍ଭ କଲାବେଳେ ଖଡ଼ଗପୁରରେ କାମ କରିଛି । ତୁମେ ତ ଡି.ଏସ୍. (ଡିଭିଜିନାଲ୍ ସୁପରିନ୍‌ଟେଣ୍ଡେଣ୍ଟ) ହୋଇ ଯାଉଛ । ପୁରା ଡିଭିଜନ୍‌ର ସମସ୍ତ ଦାୟିତ୍ୱ ତୁମର । ସେଥିରେ ଭାରି ଛୋଟ ଜାଗା, ଗାଁ କହିଲେ ଚଳିବ । ଯଦି ପାର କାହାକୁ କହି ଏହି ଅର୍ଡ଼ର..." । ମିଷ୍ଟର ବତୀବାଲା କିଛି ଉତ୍ତର ଦେଲେ ନାହିଁ । ଭାବିଲେ, "ପୂର୍ବ ପଶ୍ଚିମ ଉତ୍ତର ଦକ୍ଷିଣରୁ ମିଳିବ କ'ଣ ? ଯେଉଁଠି ଭଗବାନ ଦାନାପାଣି ଖଞ୍ଜିଛନ୍ତି ସେଠାକୁ ଯିବାକୁ ପଡ଼ିବ । କାହାକୁ କହିବି ଅର୍ଡ଼ର କ୍ୟାନସଲ୍ କରିବା ପାଇଁ ? ନା, ଏ ସବୁ ମୋ ଦ୍ୱାରା ହେବ ନାହିଁ । ଏ ଶିକ୍ଷା ମୋର ନାହିଁ ।"

ମିଷ୍ଟର୍ ବତୀବାଲାଙ୍କ ପୂରା ନାମ ହେଲା ଜାହାଙ୍ଗୀର୍ ଏଚିତ୍ ବତୀବାଲା । ଧର୍ମରେ ସେ ଜୋରାଷ୍ଟ୍ରିୟାନ୍ । କେଉଁକାଳେ ତାଙ୍କ ପୂର୍ବ ପୁରୁଷମାନେ ଧର୍ମର ପ୍ରତୀକ ପବିତ୍ର ଅଗ୍ନିକୁ ଧରି ପାରସ୍ୟରୁ ଭାରତ ଆସିଥିଲେ ମଧ୍ୟ ଆଜି ବି ସେ ଭାରତରେ ପାର୍ସି ବୋଲି ପରିଚିତ । ତାଙ୍କ ବାପା ମା' ରହୁଥିଲେ ସିନ୍ଧୁ ପ୍ରଦେଶରେ । କିନ୍ତୁ ସ୍ୱାଧୀନତାର କିଛି ବର୍ଷ ପୂର୍ବରୁ ବମ୍ବେ ଚାଲିଆସି ସେଠାରେ ବ୍ୟବସାୟ ଆରମ୍ଭ କରିଥିଲେ । ଇରିତ୍‌ଙ୍କ ଶିକ୍ଷାଦୀକ୍ଷା ସବୁ ବମ୍ବେରେ ହୋଇଛି । ବାପା ମାଆ ତାଙ୍କର ଅତ୍ୟନ୍ତ ଧର୍ମପରାୟଣ ଥିଲେ । ପିଲାମାନଙ୍କୁ ଧାର୍ମିକ,

ସଚ୍ଚୋଟ ଓ କର୍ମଠ କରି ଗଢ଼ିଥିଲେ ସେମାନେ । ଇରିଡ୍ ଅତ୍ୟନ୍ତ ସତ୍ୟବାଦୀ, ଚରିତ୍ରବାନ୍ ଓ ଦୟାଳୁ ହୋଇଥିଲେ ମଧ୍ୟ ଏକଜିଦିଆ ଥିଲେ ।

ଡିଭିଜନ୍ ସାରା ପ୍ରଚାର ହୋଇଗଲାଣି – "ନୂଆ ଡି.ଏସ୍. ସାହେବଟା ବଡ଼ କଡ଼ା । ଖଣ୍ଡାଧାରରେ ଚାଲିବା ଲୋକ । ନିଜେ ଅଫିସ୍‌ରେ ନଅଟା ବେଳୁ ଯାଇ ବସୁଛି, ଅଫିସରମାନଙ୍କ ଜୀନା ହାରାମ୍ କରିଦେଲାଣି । ଯିଏ ଦଶଟା ପରେ ଆସୁଛି ତାକୁ ଆବ୍‌ସେଣ୍ଟ୍ ମାର୍କ କରି ସେଦିନଟା ତା'ର ଛୁଟି କରେଇ ଦେଉଛି... ।"

ମିଷ୍ଟର ବତୀବାଲା ଟ୍ରାଫିକ୍ ପରିଚାଳନା ଓ ବାଣିଜ୍ୟ ବିଭାଗର । ଜୁନିୟର ଅଫିସର୍ ଥିଲାବେଳେ ସେ ଉଭୟ ପରିଚାଳନା ଓ ବାଣିଜ୍ୟ ବିଭାଗରେ କାମ କରିଥିଲେ ମଧ୍ୟ ବାଣିଜ୍ୟରେ ତାଙ୍କର ଖୁବ୍ ଦକ୍ଷତା । ସେ ଭାବନ୍ତି ଏହି ବିଭାଗଟିର ସର୍ବାଙ୍ଗୀନ ଉନ୍ନତି ହେଲେ ରେଲ୍‌ୱେର ଉନ୍ନତି ସୁନିଶ୍ଚିତ । ମଝିରେ ମଝିରେ ସର୍‌ପ୍ରାଇଜ୍ ଟିକେଟ୍ ଚେକିଙ୍ଗ୍ ତାଙ୍କର ଗୋଟାଏ ଝୁଙ୍କ୍ । କେତେ ଯେ ଛାତ୍ର, ଶିକ୍ଷକ ଓ ପ୍ରଶାସକ ତାଙ୍କ ଟିକେଟ୍ ଚେକିଙ୍ଗ୍‌ର ଶିକାର ହେଲେଣି ତା'ର ସୀମା ନାହିଁ । ଡି.ଏସ୍. ସାହେବ ମାସ ଦୁଇଟା ଭିତରେ ତାଙ୍କର କଠୋର ରୂପ ଦେଖାଇ ସାରା ଡିଭିଜନ୍‌ରେ କୋକୁଆ ଭୟ ଖେଳେଇ ଦେଲେଣି ।

ଅଗଷ୍ଟ ମାସ, ମେଘ ଲାଗି ରହିଛି ଅବିରାମ । ରାତି ସାଢ଼େ ସାତ କି ଆଠଟା ହେବ । ମିଷ୍ଟର ବତୀବାଲା ଗୋଟିଏ ଜୀପ୍ ନେଇ ବାହାରି ପଡ଼ିଲେ ସର୍‌ପ୍ରାଇଜ୍ ଚେକିଙ୍ଗ୍‌ରେ । ସେ କୁଆଡ଼େ ଯାଉଛନ୍ତି ଓ କେତେବେଳେ ଫେରିବେ ସେ ବିଷୟରେ ତାଙ୍କ ସ୍ତ୍ରୀଙ୍କୁ ମଧ୍ୟ କିଛି ଜଣାଇଲେ ନାହିଁ ।

ଡ୍ରାଇଭର୍ ରାମ ପ୍ୟାରୀ ପଚାରିଲା, "ସାହେବ, କୁଆଡ଼େ ଯିବା ?"

"ଶ୍ରୀମ୍‌ଚକ୍", ଉତ୍ତର ଦେଲେ ମିଷ୍ଟର ବତୀବାଲା ।

"ସାହେବ, ରାସ୍ତା ବଡ଼ ଖରାପ, ପୁଣି ଏ ମେଘ ରାତିରେ... ।"

"ଆଉ କ'ଣ ଦିନ ଦି'ପହରରେ ସରପ୍ରାଇଜ୍ ଚେକ୍ କରାଯାଏ ?"

ଡ୍ରାଇଭର୍ କିଛି ଉତ୍ତର ନଦେଇ ଗାଡ଼ି ଷ୍ଟାର୍ଟ କଲା । ଖଡଗ୍‌ପୁର୍‌ରୁ ଶ୍ରୀମ୍‌ଚକ୍‌ର ଦୂରତ୍ୱ ୧୯/୨୦ କି.ମି. । ଶୁଖିଲା ପାଗ ହୋଇଥିଲେ ଅଧ ଘଣ୍ଟେ ଲାଗେ, କିନ୍ତୁ ଏମିତି ପାଗରେ ଲାଗିଲା ଘଣ୍ଟାକରୁ ବେଶୀ ।

ଷ୍ଟେସନ୍‌ରେ ପହଞ୍ଚି ଡି.ଏସ୍, ସାହେବ ସିଧା ଚାଲିଲେ ଷ୍ଟେସନ୍ ମାଷ୍ଟର ରୁମ୍‌କୁ । କିନ୍ତୁ ଏ କ'ଣ ? ରୁମ୍‌ରେ କେହି ନାହିଁ । କବାଟ ଦର ଆଉଜା ହୋଇଛି । କବାଟ ପାଖକୁ କାନ୍ଥକୁ ଲାଗି ଶୋଇଛି ଲୋକଟାଏ । ତା' ମୁଣ୍ଡ ପାଖରେ ସିଗ୍‌ନାଲ୍ ବତୀଟି ଥୁଆ ହୋଇଛି । ଦୁଇଟା ବୁଲାକୁକୁର ବାରଣ୍ଡାର ଗୋଟେ କୋଣରେ ଜାକିଜୁକି ହୋଇ କୁଣ୍ଡଳୀମାଡ଼ି ଶୋଇଛନ୍ତି । ପାଖ ଗଛରୁ ପେଚାଟାଏ ମଝିରେ ମଝିରେ ହୁଁ ହୁଁ କରୁଛି । ରୁମ୍ ଭିତରେ କାନ୍ଥରେ ଟଙ୍ଗା

ହୋଇଛି ଏ.ଏସ୍.ଏମ୍.ର ଧଳା କୋଟ୍‌ଟା ।

ଡି.ଏସ୍. ସାହେବ ରାଗି ଅଗ୍ନିଶର୍ମା । ପ୍ରକୃତରେ ଏଠାକାର ଲୋକଗୁଡ଼ାକ ଭୟଙ୍କର ଠକ । ଗର୍ଜିଉଠି ସେ ପିଣ୍ଡାରେ ଶୋଇଥିବା ଖଲାସିଟିକୁ ହଲେଇଦେଇ ପଚାରିଲେ, "କୌନ୍ ହୋ ତୁମ୍ ? କାହାଁ ହୈ ଏ.ଏସ୍.ଏମ୍. ସାହେବ ?"

ଖଲାସିଟି ଆଖି ମଳି ମଳି ଉଠିଲା । ଲାଇଟ୍‌ଟୋକୁ ଡାହାଣ ହାତରେ ଟେକି ଆଗନ୍ତୁକଙ୍କ ମୁହଁକୁ ଚାହିଁଲା ।

ସାହେବଙ୍କ ପୂରା ଦେହରେ ବର୍ଷାତି । ତା' ଛଡ଼ା ତାଙ୍କ ଦେହରେ ତ ଲେଖା ହୋଇନି ସେ କିଏ ? ତେଣୁ ଖଲାସିଟା ରାତିଟାରେ ତାଙ୍କୁ ଚିହ୍ନନ୍ତା ବା କେମିତି ? ସେ ଜାଣେ ଏଠୁ ବେଳେ ବେଳେ ପାସେଞ୍ଜର ଚଢ଼ନ୍ତି । ଅଧାରୁ ବେଶୀ ବିନା ଟିକଟ୍‌ରେ, ଆଉ ବାକିତକ ଟିକଟ ପାଇଁ ଟିକଟ୍ ଘରକୁ ଯାଆନ୍ତି, କିନ୍ତୁ ରାତିଟାରେ ଟିକଟ କିଣିବା କ'ଣ ଦରକାର ?

ସେ ଗୋଟାଏ ବଡ଼ ହାଇମାରି କହିଲା, "କୁଆଡ଼େ ଯିବ ତୁମେ ? ଏ.ଏସ୍.ଏମ୍. ସାହେବ କୁଆଡ଼େ ଗଲା ସେଥିରୁ ତୁମକୁ କ'ଣ ମିଳିବ ? ତା' ଘର ପାନ୍‌ଶକୁରା, ଏଇଟା ଶେଷ ପାସେଞ୍ଜର, ସେଇଥିରେ ଚଢ଼ି ଯାଇଛି । ଟିକେଟ୍ ଫିକେଟ୍ ସେ ଦିଏ ନାହିଁ । ହଇହୋ, କି ବୁଦ୍ଧି ତୁମର ? ରାତି ଗାଡ଼ିଟାରେ ପୁଣି ଏ ପାଗରେ ଟିକଟ କଥା କେଉଁ ଟି.ଟି. ପଚାରିବ ଶୁଣେ ? ଯଦି ଯିବା କଥା ଯା– ଶୀଘ୍ର ଚଢ଼ି ଯାଅ । ସିଗ୍‌ନାଲ୍ ଦିଆ ହୋଇସାରିଛି ଅନେକ ବେଳୁ... ।"

ଗାଡ଼ିଟା ପ୍ଲାଟଫର୍ମରେ ଠିଆ ହୋଇଛି । ଡ୍ରାଇଭର୍ ବାବୁ ଚା' ପିଉଛନ୍ତି ବୋଧେ ! ଡି.ଏସ୍. ସାହେବ ଖଲାସିକୁ ଚାହିଁଲେ ଟିକିଏ । କ'ଣ ଭାବିଲେ କେଜାଣି ଦୌଡ଼ିଯାଇ ଗୋଟାଏ ଡିଆଁରେ ଷ୍ଟେସନ୍‌ରେ ଠିଆ ହୋଇଥିବା ପାସେଞ୍ଜର ଗାଡ଼ିଟିରେ ଚଢ଼ିଗଲେ । ଆଜି ସେ ଠକ ଷ୍ଟେସନ୍‌ମାଷ୍ଟର୍‌କୁ ପାନେ ଚଖାଇବେ ଯେମିତି ସାରା ଜୀବନ ସେ ଭୁଲି ପାରିବନି । ଯେକୌଣସି ମତେ ତାକୁ ଧରିବାକୁ ହେବ ।

ଏ.ଏସ୍.ଏମ୍. (ଆସିଷ୍ଟାଣ୍ଟ ଷ୍ଟେସନ୍ ମାଷ୍ଟର୍) କାଦର ଖାଁର ଭାଗ୍ୟ ଭାରି ଖରାପ । ନହେଲେ କାହିଁକି ତା'ର ଏ ନିଆଁଲଗା ଜାଗାରେ ପୋଷ୍ଟିଙ୍ଗ୍ ହୋଇଥାଆନ୍ତା ? ନହେଲେ କାହିଁକି ସେ ଅଧିକାଂଶ ରାତିରେ ଡ୍ୟୁଟି କରିବାରେ ଏତେ ଠକାନ୍ତା ? ଉପର ହାକିମକୁ ଗୋଡ଼ହାତ ଧରି କେତେ କାକୁତିମିନତି ହୋଇ ନକହିଛି ତା' ପୋଷ୍ଟିଙ୍ଗ୍‌ଟା ତା' ଗାଁ ଷ୍ଟେସନ୍‌ରେ କରିଦେବାକୁ । କିନ୍ତୁ ସେ କାହିଁକି ଶୁଣିବ ? ଯୁକ୍ତି କରିବ ନିଜ ଗାଁରେ ରହିଲେ କାହାକୁ ମନା କରିପାରିବନି, ପ୍ରିୟାପ୍ରୀତି ତୋଷଣ ବେଶୀ । "ଶାଲାକା ମାଥା ମେଁଗୋ ବୋର୍ ଆଛେ... "

କାଦର ଖାଁ ନା ମୁସଲମାନ ନା ବଙ୍ଗାଳୀ । କେତେବେଳେ ସେ ଖାଁ ସାହେବ୍ ତ କେତେବେଳେ ସେ କେଦାର ଦାଦା । ସେ ବଙ୍ଗାଳୀ ମୁସଲମାନ । ନିଜର ବଂଶର ଇତିହାସ ଜାଣିବାରେ ତା'ର ଆଦୌ ଆଗ୍ରହ ନଥାଏ । ସେ ଯେମିତି ସେମିତିରେ ସେ ଖୁସି । ସେ କଥା କହେ ବଙ୍ଗଳାରେ, ବଙ୍ଗାଳୀମାନଙ୍କ ପରି ପ୍ରତିଦିନ ଭାତ, ମାଛର ଝୋଲ୍ ଖାଏ । ସିନେମା ଦେଖେ ଉତ୍ତମ ସୁଚିତ୍ରା କିମ୍ବା ସୌମିତ୍ର ସୁପ୍ରିୟାଙ୍କର । ପୂଜାବେଳେ ଦୁର୍ଗାମଣ୍ଡପରେ ଭଲ ଜଣାଣ ଗାଏ । ନିଜ ଧର୍ମ ବିଷୟରେ ବହୁତ କମ୍ ଜଣା ତାକୁ । ରେଳକାମରେ ଠିକ୍ ସମୟରେ ନମାଜ୍ ପଢ଼ିପାରେନି । ଧର୍ମ କଥା କେବଳ ଇଦ୍, ମହରମ୍‌ରେ । ସେଇଦିନ ସେ ନୂଆ ଲୁଗା ପିନ୍ଧି ଅତର ଲଗାଇ ମସ୍‌ଜିଦ୍ ଯାଏ । ସିମେଇ ଓ ବିରିୟାନି ଖାଏ । ବର୍ଷକରେ ସେଇ ପର୍ବଦିନ ତକ ସେ ମୁସଲମାନ୍, ବାକି ସବୁଦିନ ପାନଶ୍‌କୁରାର ସାଧାରଣ ବଙ୍ଗାଳୀଟିଏ । କିନ୍ତୁ କାଦର୍‌ର ସ୍ତ୍ରୀ ଫତିମା କାଦର୍ ଅପେକ୍ଷା ଅନେକ ଭିନ୍ନ । ସେ ନିଜକୁ ଖାନ୍‌ଦାନି ମୁସଲମାନ ବଂଶଜ ଭାବେ । ତା' ଘର କଲିକତାର ଖିଦିର୍‌ପୁରରେ । ସେ କହେ ତା' ପୂର୍ବଜମାନେ କୁଆଡ଼େ ନବାବଙ୍କ ସଙ୍ଗେ ଲକ୍ଷ୍ନୌରୁ ଆସିଥିଲେ । ସେମାନେ ନବାବ୍‌ଙ୍କର ଖାସ୍ ଲୋକ ଥିଲେ । ଫତିମା କୋରାନ୍ ପଢ଼େ । ସବୁ କଥାରେ ଆଲ୍ଲାଙ୍କୁ ଡାକେ । କିନ୍ତୁ କାଦର୍ ଖାଁର ସେଥିପ୍ରତି ଖିଆଲ୍ ନଥାଏ । ସେ କେବଳ ଚାହେଁ ତା' ବିବିକୁ । ନିଜଠାରୁ ଅଧିକ ଭଲ ପାଏ ତାକୁ । ସେଥିପାଇଁ ଏ ନାଇଟ୍ ଡ୍ୟୁଟିଟା ତାକୁ ଭାରି ବିରକ୍ତ ଲାଗେ । ଖଲାସିକୁ ଜଗେଇଦେଇ ସେ ଘରକୁ ପଳେଇଯାଏ ।

କାଦର୍ ଖାଁ ସିଗାରେଟ୍ ଖଣ୍ଡେ ଲଗେଇ ଦେଇ ଝରକା ପାଖ ଗୋଟିକିଆ ସିଟ୍‌ରେ ବସିଛି । ବାହାର ମେଘ ଛିଟିକା ତା' ଉପରେ ଅଳ୍ପ ଅଳ୍ପ ପଡୁଛି । ଆଜି ପାସେଞ୍ଜରଟା ଡେରିରେ ଆସିଛି ଷ୍ଟେସନ୍‌ରେ ବି ଅନେକ ସମୟ ପକାଇଲାଣି । ଆଗରେ ଗୋଟାଏ ମାଲ୍‌ଗାଡ଼ି ଗଲେ ପାସେଞ୍ଜର ଗାଡ଼ିର ଅବସ୍ଥା ଏୟା ହୁଏ । ରାତି ହୋଇଗଲେ ଖାଲି ମାଲ୍‌ଗାଡ଼ିଙ୍କ ରାଜ୍ । ପାସେଞ୍ଜର ଗାଡ଼ିକୁ ପଚାରେ କିଏ ?

ତା' ଆଗ ସିଟ୍‌ଟା ବି ଖାଲି । ଗୋଡ଼ ଦୁଇଟା ଆଗ ସିଟ୍‌ରେ ଲମ୍ବେଇ ଦେଇ କାଦର୍ ଖାଁ ଟିକିଏ ଆଖିବୁଜି ଆରାମ କରିବାକୁ ଚେଷ୍ଟା କରୁଛି । ଏହି ସମୟରେ କିଏ ତା' କାନ୍ଧକୁ ହଲେଇ ଦେଇ ପଚାରିଲା, 'ଟିକଟ୍' ?

କାଦର୍ ଆଖି ଖୋଲିଲା, ଚାହିଁଲା ଲୋକଟାକୁ । କି ଅଭଦ୍ର ଲୋକଟାଏ, ଟର୍ଚ୍ଚଟା ଟିପିଚି ତା' ମୁହଁ ଉପରକୁ । କିଏ ଏଇଟା ?

"ଆବେ ମେଁ କାଦର ଖାଁ, ଶ୍ୟାମ୍‌ଚକ୍ କା ଷ୍ଟେସନ୍ ମାଷ୍ଟର୍ ।" ଖୁବ୍ ଓଜନ ହେଇ ଉତ୍ତର ଦେଲା କାଦର୍ ଖାଁ ।

ଲୋକଟା ପୁଣି ମାଗିଲା ଟିକଟ୍ - "ଟିକଟ୍ ଦୋ" । ତା'ର ଗୋଟାଏ ହାତରେ

ଭଙ୍ଗା ହୋଇଥିବା ଉଦା ବର୍ଷାତି, ଅନ୍ୟ ହାତରେ ଜଳନ୍ତା ଟର୍ଚ୍ଚ ।

କାଦର୍‌ର ସନ୍ଦେହ ହେଲା – ନକଲି ଟି.ଟି. ହୋଇ କିଏ ଗୋଟାଏ ପଇସା ସଂଗ୍ରହର ସହଜ ଉପାୟ ଅବଲମ୍ବନ କରିଛି । ଏ ସେକ୍ସନ୍‌ରେ କେଉଁ ଟିଟି ତାକୁ ଚିହ୍ନନ୍ତି ଯେ, ଟିକଟ୍ ମାଗିବ ? କାଦର୍ ଖାଁ ଜୋର୍‌ରେ ପଚାରିଲା, "କ୍ୟା ନାମ ହୈ ତୁମାହାରା ? କାହାଁକା ଟି.ଟି. ହୋ ତୁମ୍ ?"

ଉତ୍ତର ଆସିଲା, "ଜେ.ଭ. ବତୀବାଲା, ଖଡ୍‌ଗପୁର କା ଡି.ଏସ୍. ।"

କାଦର୍ ଖାଁ ଆଗରେ ସତେ ଯେମିତି ସ୍ୱଦେହରେ ସଇତାନ୍ ଆସି ଠିଆ ହୋଇଛି । ସେ ଝଟ୍ କରି ଉଠିପଡ଼ି ଡି.ଏସ୍. ସାହେବଙ୍କୁ ଠେଲିଦେଇ ଟ୍ରେନ୍‌ରୁ ଡେଇଁ ପଡ଼ିଲା । ଆଗ ପଛ କିଛି ନଭାବି ପ୍ରାଣ ବିକଳରେ ଦୌଡ଼ିଲା ଏକ ମୁହାଁ ହୋଇ ଧାନବିଲ, ପାଣିପଙ୍କ କିଛି ନମାନି ।

ଡି.ଏସ୍. ସାହେବ କ'ଣ ହାରିବା ଲୋକ । ସେ ମଧ୍ୟ କାଦର୍ ପଛେ ପଛେ ଗାଡ଼ିରୁ ଡେଇଁପଡ଼ିଲେ । ଚାରିଆଡ଼ ଅନ୍ଧାର କିଟିକିଟି, ମୁହଁକୁ ମୁହଁ ଦିଶୁନି । ଡେଇଁଲା ବେଳେ ଟର୍ଚ୍ଚଟା ଓ ବର୍ଷାତିଟା କୁଆଡ଼େ ପଡ଼ିଗଲା ସେ ଜାଣିପାରିଲେ ନାହିଁ । ତଥାପି ଅନୁମାନ କରି ଧାନ କିଆରୀ ପାଖ ହିଡ଼ରେ ଦୌଡ଼ିବାକୁ ଲାଗିଲେ । ବର୍ଷାତିଟା ଟ୍ରେନ୍‌ରେ ଭୁଲି ଆସିଛନ୍ତି । ଗାଡ଼ିରୁ ଡେଇଁଲା ବେଳେ ଟର୍ଚ୍ଚଟା ମଧ୍ୟ କୁଆଡ଼େ ଖସି ପଡ଼ିଲା । ସାର୍ଟ ପ୍ୟାଣ୍ଟ ସବୁ ଓଦା ହୋଇ ଦେହରେ ଲାଗି ଯାଇଛି । ବର୍ଷାର ପ୍ରାଦୁର୍ଭାବ ଲାଗିଲାଣି । ଏପରି ଅବସ୍ଥାରେ କାଦର୍ ଖାଁକୁ ଖୋଜିବା ଅସମ୍ଭବ ହୋଇପଡ଼ିଲା ମିଷ୍ଟର ବତୀବାଲାଙ୍କ ପାଇଁ । ତେବେ ମନରେ ଏତିକି ସନ୍ତୋଷ, ତାକୁ ସେ ଚିହ୍ନିପାରିବେ ନିଶ୍ଚୟ । କାଲି ତାକୁ ଖଡ୍‌ଗପୁର ଡକାଇ ତା' ଠକାମିର ଉପଯୁକ୍ତ ପୁରସ୍କାର ଦେବେ ।

କିନ୍ତୁ ବର୍ତ୍ତମାନର ସମସ୍ୟା ସେ କୁଆଡ଼େ ଯିବେ । ଚାରିଆଡ଼େ ଅନ୍ଧାର କିଟିକିଟି । କିଛି ଦେଖାଯାଉନି । ଏହି ସମୟରେ ଗୋଟାଏ ବିଜୁଳି ମାଇଲା ଏବଂ ସେହି ଆଲୋକରେ ସେ ଧାନକିଆରୀ ପାଖରୁ ରେଳ ଲାଇନ୍‌କୁ ଦେଖିପାରିଲେ । ମିଷ୍ଟର ବତୀବାଲାଙ୍କ ଗୋଡ଼ରେ ଭୟଙ୍କର ଯନ୍ତ୍ରଣା । କାଦର୍ ଖାଁକୁ ଧରିବାର ନିଶାରେ ଗାଡ଼ିରୁ ଡେଇଁଲା ବେଳେ ଡାହାଣ ଗୋଡ଼ଟା ମୋଡ଼ି ହୋଇଯାଇଛି ବୋଧେ । ଧୀରେ ଧୀରେ ଛୋଟେଇ ଛୋଟେଇ ଲାଇନ୍ କଡ଼େ କଡ଼େ ଚାଲିଥାଆନ୍ତି । ଶ୍ୟାମ୍‌ଚକ୍ ପହଞ୍ଚିବାକୁ ହେଲେ ତାଙ୍କୁ ଚାରି ପାଞ୍ଚ କି.ମି. ଚାଲିବାକୁ ହେବ । ଏହାଛଡ଼ା ଆଉ ଉପାୟ ବା କ'ଣ ଅଛି ।

ଝିଂକାରୀର ଝିଁ ଝିଁ ଶବ୍ଦ ଓ ଜୁଳୁଜୁଳିଆ ପୋକର ଆଲୋକକୁ ପାଥେୟ କରି ମିଷ୍ଟର ବତୀବାଲା ଚାଲିବାକୁ ଲାଗିଲେ । ଏଣେ ଜିପ୍ ଡ୍ରାଇଭର୍ ଘଣ୍ଟାଏ ଖଣ୍ଡେ ଯିବା ପରେ ଭାବିଲା, "ସାହେବ୍ ଏତେବେଳ ଯାଏଁ କରୁଛନ୍ତି କ'ଣ ? କେତେବେଳେ ଫେରିବେ

ଖଡ଼୍ଗପୁର ? ତାକୁ ଟିକିଏ ଅସ୍ୱସ୍ତି ଲାଗିଲା । କଥା କ'ଣ ଜାଣିବା ପାଇଁ ଷ୍ଟେସନ୍ ଭିତରକୁ ଯାଇ ଦେଖିଲା ସାହେବ ନାହାନ୍ତି କି ଏ.ଏସ୍.ଏମ୍. ନାହାନ୍ତି । ତେବେ ଗଲେ କୁଆଡ଼େ ଏମାନେ ? କବାଟ ପାଖରେ ଖଲାସିଟା ବତୀଟାକୁ ମୁଣ୍ଡ ପାଖରେ ରଖି ଘୋଡ଼େଇପୋଡ଼େଇ ହୋଇ ପୁଣି ଶୋଇ ପଡ଼ିଛି । ରାମପ୍ୟାରୀ ତା' ଦେହରୁ ଚାଦର ଉଠେଇଦେଇ ପଚାରିଲା, "ଡି.ଏସ୍. ସାହେବ କୋଆଡେ଼ ଗାଲେ ?"

"ଡି.ଏସ୍. ସାହେବ ? ସେ ଏଠାକୁ କାହିଁକି ଆସିବେ ? ମୁଁ କେମିତି ଜାଣିବି ସେ କୁଆଡ଼େ ଗଲେ ?" ବିରକ୍ତ ହୋଇ ଉତ୍ତର ଦେଲା ଖଲାସି କିଟି ପରମାଣିକ ଓ ଚାଦରଟା ମୁଣ୍ଡ ଯାଏଁ ଝିଙ୍କି ଆଣି ଶୋଇବାକୁ ଚେଷ୍ଟା କଲା । ଏହି ସମୟରେ ବାରଣ୍ଡାରେ ଶୋଇଥିବା କୁକୁର ଦୁଇଟା ଏକାଥରେ ଭୁକି ଉଠିଲେ । ରାମପ୍ୟାରୀକୁ ଲାଗିଲା କିଛି ଗୋଟାଏ ଅଘଟଣ ନିଶ୍ଚୟ ହୋଇଛି । ସେ କିଟିକୁ ଉଠେଇ ସବୁ ବୁଝାଇ କହିଲା- ଡି.ଏସ୍. ସାହେବ ଘଣ୍ଟାକ ତଳେ ସରପ୍ରାଇଜ୍ ଚେକ୍‌ରେ ଆସିଥିଲେ । ତୁମ ଏ.ଏସ୍.ଏମ୍. କୁଆଡ଼େ ଗଲେ ?"

ଏଥର କିଟିକୁ ସବୁ ଜଳ ଜଳ ଦିଶିଲା, ନିଦଫିଦ ସବୁ ଛାଡ଼ିଗଲା ତା'ର । ସେ ଡରିଯାଇ ବରଡ଼ାପତ୍ର ପରି ଥରି ଥରି କହିଲା, "ମା' କାଳୀ, ସବୁ ସତ୍ୟାନାଶ ହୋଇଛି । ମୁଁ କ'ଣ କରିବି । ଏ.ଏସ୍.ଏମ୍. ଲାଷ୍ଟ୍ ପାସେଞ୍ଜର୍‌ରେ ପାନ୍‌ଶକୁରା ଯାଉଥିଲେ, ସେଥିରେ ଡି.ଏସ୍. ସାହେବ ଚଢ଼ିବା ମୁଁ ଦେଖିଛି । ମୁଁ କ'ଣ ଜାଣିଥିଲି ସେ ଡି.ଏମ୍. ସାହେବ ବୋଲି । ହେ ଭଗବାନ୍... ।" ରାମପ୍ୟାରୀ ରେଲ୍‌ୱେରେ ଚାକିରି କଲାଣି ପନ୍ଦର ବର୍ଷ ହେଲାଣି । କେଉଁ ପରିସ୍ଥିତିରେ କ'ଣ କରିବାକୁ ହେବ ସେ ଭଲ କରି ଜାଣେ । ସାହେବ ଲାଷ୍ଟ୍ ପାସେଞ୍ଜରରେ ଚଢ଼ିଛନ୍ତି ଓ ସେ କେଉଁଠି ଅଛନ୍ତି ତାହା ଜାଣିବା ପାଇଁ ସେ ଖଡ଼୍ଗପୁର କଣ୍ଟ୍ରୋଲ୍‌କୁ ଫୋନ୍ କଲା । କଣ୍ଟ୍ରୋଲ୍ ଶ୍ୟାମ୍‌ଚକ୍‌ରୁ ପାନଶ୍‌କୁରା ଭିତରେ ସବୁ ଷ୍ଟେସନ୍‌କୁ ଖବର ପଠାଇଲା ସାହେବଙ୍କୁ ଖୋଜିବା ପାଇଁ । ମାତ୍ର ସାହେବ ମିଳିଲେ ନାହିଁ । ଅନ୍ୟ ଉପାୟ ନପାଇ ଦୁଇଜଣ ଅଫିସର୍ ଗାଡ଼ି ନେଇ ମିଷ୍ଟର୍ ବତୀବାଲାଙ୍କୁ ଖୋଜିବା ପାଇଁ ଶ୍ୟାମଚକ୍ ଅଭିମୁଖେ ବାହାରି ପଡ଼ିଲେ । ଶ୍ୟାମଚକ୍‌ରେ ପହଞ୍ଚି ବଡ଼ ବଡ଼ ପାଞ୍ଚ ସେଲ୍‌ର ଟର୍ଚ୍ଚ ଧରି ଅଫିସର ଦୁହେଁ, ଡ୍ରାଇଭର୍ ତିନିଜଣ, ଚାରିପାଞ୍ଚଟା ଖଲାସି ପ୍ଲାଟଫର୍ମ ଆଖପାଖ ସବୁ ଖୋଜିବାରେ ଲାଗିଲେ ।

ରାତି ବଢ଼ିବାରେ ଲାଗିଥାଏ । ମେଘ କିଛି ସମୟ ଛାଡ଼ିଯାଏ, ପୁଣି ଦୁଇଗୁଣ ଜୋର୍‌ରେ ବର୍ଷିବାକୁ ଲାଗେ । ପ୍ରକୃତିର ନିଷ୍ଠୁରତା ପାଖେ ମଣିଷ କେତେ ଲଢ଼ିପାରିବ ।

ତଥାପି ଚେଷ୍ଟା ଚାଲିଥାଏ । ଖଲାସିମାନେ ସିଗ୍‌ନାଲ ବତୀ, ଟର୍ଚ୍ଚ ଧରି ପ୍ଲାଟଫର୍ମରେ ଠିଆ ହୋଇଥାଆନ୍ତି । ଟର୍ଚ୍ଚ ଆଲୁଅରେ ସାରା ପ୍ଲାଟଫର୍ମଟା ପରିଷ୍କାର ଦେଖାଯାଉଥାଏ । ରାତି ପ୍ରାୟ ଦୁଇଟା ବେଳକୁ ଡି.ଏସ୍. ସାହେବ ଛୋଟେଇ ଛୋଟଇ ଶ୍ୟାମ୍‌ଚକ୍ ଷ୍ଟେସନ୍‌ରେ

ଆସି ପହଞ୍ଚିଲେ । ଦେହରୁ ପାଣି ଗଡ଼ିପଡୁଛି । ସମସ୍ତେ ଆସି ମିଷ୍ଟର ବତୀବାଲାଙ୍କ ଚାରିପଟେ ଘେରିଗଲେ । କାହାକୁ କିଛି କହିବାର ମାନସିକ ଶକ୍ତି ତାଙ୍କର ନଥିଲା । ସେ ସିଧା ଯାଇ ଜିପ୍‌ରେ ବସିଲେ । ରାମପ୍ୟାରୀ ଗାଡ଼ି ଷ୍ଟାର୍ଟ କଲା । ଅନ୍ୟ ଗାଡ଼ି ଦୁଇଟା ତାଙ୍କ ଗାଡ଼ି ପଛେ ପଛେ ଚାଲିଥାଏ ।

ସାହେବ ବଙ୍ଗଳାକୁ ସିଧା ଗଲେ । ଶ୍ରୀମତୀ ବତୀବାଲା ସ୍ୱାମୀଙ୍କ ଫେରିବାରେ ବିଳମ୍ବ ହେବା ନେଇ ଅତ୍ୟନ୍ତ ଚିନ୍ତିତ ଥିଲେ । ସ୍ୱାମୀଙ୍କ ଅବସ୍ଥା ଦେଖି ଚୁପ୍ ରହିବାଟା ଉଚିତ୍ ମନେକଲେ ।

ପରଦିନ ମିଷ୍ଟର ବତୀବାଲା ଅଫିସ୍ ଯିବା ପରିସ୍ଥିତିରେ ନଥିଲେ । ବର୍ଷାରେ ଭିଜିଭିଜି କାଶ, ସର୍ଦ୍ଦି ଓ ଜ୍ୱର । ଗୋଡ଼ଟା ଫୁଲି ଟେକି ହେଉ ନଥାଏ । ଡିଭିଜନ୍‌ର ବଡ଼ ଡାକ୍ତର ଆସି ଚିକିତ୍ସାର ସମସ୍ତ ବନ୍ଦୋବସ୍ତ କଲେ । ମାତ୍ର ଏକ୍ସ-ରେ ପାଇଁ ବହୁ କଷ୍ଟରେ ଡାକ୍ତରଖାନା ଯିବାକୁ ପଡ଼ିଥିଲା । ଶେଷରେ ଜଣାପଡ଼ିଲା ବଳାଗଣ୍ଠି ପାଖେ ଛୋଟ ହେୟାର୍ ଲାଇନ୍ ଫ୍ରାକ୍‌ଚର୍‌ଟାଏ ଅଛି । ଅତି କମ୍‌ରେ ତିନି ସପ୍ତାହ ପ୍ଲାଷ୍ଟର କରି ରଖିବାକୁ ହେବ ।

ଇତି ମଧ୍ୟରେ ବିଜୁଳି ବେଗରେ ପ୍ରଚାର ହୋଇଗଲାଣି ଏ ଦୁଃସମ୍ବାଦ । "ଡି.ଏସ୍. ସାହେବ ସରପ୍ରାଇଜ୍ ଟିକେଟ୍ ଚେକିଙ୍ଗ୍ କରୁ କରୁ ବିନା ଟିକଟ୍‌ର ପାସେଞ୍ଜରମାନେ ତାଙ୍କୁ ଗାଡ଼ିରୁ ଠେଲିଦେଲେ – ଏ ଦୁର୍ଘଟଣା ଶ୍ୟାମ୍‌ଚକ୍‌ରୁ ବାଲିଚକ୍ ମଧ୍ୟରେ ଘଟିଥିଲା । ଡି.ଏସ୍. ସାହେବଙ୍କ ଡାହାଣ ଗୋଡ଼ଟା ଚାରିଖଣ୍ଡ ହୋଇଯାଇଛି...ଇତ୍ୟାଦି... ।"

ୟୁନିଅନ୍ ଲିଡର୍ ଭେଙ୍କଟ୍‌ରାଓ ତା' ଲଣ୍ଡାମୁଣ୍ଡକୁ ଆଉଁସି ଆଉଁସି ମୃଦୁ ହସି କହିଲା, "ଆଇ ଓ, ଟିକଟ ଚେକ୍ କରତେ କରତେ କ୍ୟା ବତୀବାଲା କା ବତୀ ବୁଝଗୟା... ।" ଦଳେ ଚେଲା ଏକ ସ୍ୱରରେ ହସି ଉଠିଲେ ।

ପରଦିନ ସଂଧ୍ୟାବେଳେ କାଦର ଯେତେବେଳେ ଡ୍ୟୁଟିକୁ ଆସିଲା ଖଲାସି କିଟି ତାଙ୍କୁ ପୂର୍ବରାତିର ସମସ୍ତ ଘଟଣା ଆମୂଳଚୂଳ ବର୍ଣ୍ଣନା କରି କହିଥିଲା । କାଦର ଖାଁ ମୁଣ୍ଡରେ ହାତଦେଇ ମୂକ ପାଲଟିଗଲା । ସେ ଏତେ ଡରିଗଲା ଯେ, ତାକୁ ଲାଗିଲା ତା' ମୁଣ୍ଡ ଭିତର ସତେ ଅବା ଏକ ବିରାଟ ବରଫ ଖଣ୍ଡ । ସେ ଭାବିବାର ଶକ୍ତି ହରେଇ ବସିଲା । ତାକୁ ଚାରିଆଡ଼ ଅନ୍ଧକାର ଦେଖାଗଲା । ଘଣ୍ଟାଟାଏ ସେ ପଥର ମୂର୍ତ୍ତି ପରି ତା' ଚୌକିରେ ବସି ରହିଥାଏ ।

କିଟି କହିଲା, "ବାବୁ ଏମିତି ବସିଲେ କ'ଣ ହେବ ? ଯାଇ ଡି.ଏସ୍. ସାହେବଙ୍କୁ ଦେଖା କରନ୍ତୁ, କ୍ଷମା ମାଗନ୍ତୁ ।"

କାଦର୍ ବୁଝିପାରୁ ନଥାଏ । ସେ କ'ଣ କରିବ ? କେଉଁ ମୁହଁରେ ତାଙ୍କ ପାଖକୁ ଯିବ ? କ'ଣ କହି କ୍ଷମା ମାଗିବ... ।

ଦୁଇଦିନ ପରେ କାଦର୍ କର୍ତ୍ତବ୍ୟରେ ଅବହେଳା କରିଥିବାରୁ ଚାକିରିରୁ ନିଲମ୍ବିତ ହେଲା ବୋଲି ଆଦେଶ ପାଇଲା । କାଦର୍ ଘରେ ଗୋଟିଏ ସପ୍ତାହ ଯାଏଁ ଅଖିଆ ଅପିଆ ଗୋଟିଏ କଣରେ ଚୁପ୍ ହୋଇ ବସି ରହିଲା । ପ୍ରକୃତରେ ସେ ବଡ଼ ଅନୁତପ୍ତ । ପ୍ରଥମତଃ ଡ୍ୟୁଟିରୁ ଏମିତି ପଳେଇ ଆସିବା ତା'ର ଉଚିତ୍ ହୋଇନି, ତା' ପରେ ଟିକଟ୍ ଚେକିଙ୍ଗ୍ ବେଳେ ଗାଡ଼ିରୁ ଡେଇଁପଡ଼ି ମଧ୍ୟ ସେ ବିରାଟ ଭୁଲ୍ କରିଛି । ତାକୁ ଧରିବାକୁ ଯାଇ ସିନା ଡି.ଏସ୍. ସାହେବଙ୍କର ଅବସ୍ଥା ଏ ହେଲା ! ବିନା ଟିକଟ୍‌ରେ ଧରା ପଡ଼ିଥିଲେ କିଛି ଫାଇନ୍ ହୋଇଥାଆନ୍ତା । ସେତେବେଳେ ଏତେ ଗର୍ବର ସହିତ ନିଜର ପରିଚୟ ଦେବାଟା କି ଦରକାର ଥିଲା ! କିନ୍ତୁ ତା' ସାଙ୍ଗମାନେ ତାକୁ ଜବରଦସ୍ତ ଖଡ଼୍‌ଗପୁର ନେଲେ ଡି.ଏସ୍. ସାହେବଙ୍କୁ ଦେଖାକରି କ୍ଷମା ମାଗିବା ପାଇଁ । ସେ କ'ଣ କହିବ ତା' ମଧ୍ୟ ଚିନ୍ତା କରାଯାଇଥାଏ । ସ୍ତ୍ରୀର ଦେହ ଭୀଷଣ ଖରାପ । ଜ୍ୱରରେ ସେ ଅଚେତ୍ ହୋଇପଡ଼ିଛି ବୋଲି ଖବର ପାଇଲାରୁ ସେ ବାଧହୋଇ ଯାଉଥିଲା । ସେ ଜାଣେ ଡ୍ୟୁଟି ସମୟରେ ଷ୍ଟେସନ୍ ଛାଡ଼ିଯିବାଟା ତା'ର ଘୋର ଅପରାଧ । ଭଗବାନଙ୍କ ଦ୍ୱାହି ଭବିଷ୍ୟତରେ ଏ କଥା ଆଉ କେବେ ହେବ ନାହିଁ ।

ମାସେ ଯାଏଁ କାଦର୍ ସବୁଦିନ ଡି.ଏସ୍. ସାହେବଙ୍କ ଅଫିସ୍ ଯାଏ ତାଙ୍କୁ ଦେଖା କରିବା ପାଇଁ, ମାତ୍ର ସେ ତାକୁ ଥରେ ବି ସାକ୍ଷାତ୍ ଦେଲେନି । ଏଣେ ତା'ର ଇନ୍‌କ୍ୱାରୀ ଚାଲିଥାଏ । କାଦରର ଚାକିରି ସୂତା ଖିଅରେ ଝୁଲୁଥାଏ । କେଉଁଦିନ ଚାକିରି ଯିବ ତା'ର ଠିକଣା ନାହିଁ । କାଦର୍‌କୁ ୟୁନିଅନ୍ ଲିଡର୍ ତା' ଦୋଷ ନମାନି ଫାଙ୍କି ମାରିବାକୁ କହିଥିଲା, କିନ୍ତୁ କାଦର୍ ନିଜର ସମସ୍ତ ଭୁଲ୍‌କୁ ମାନି ନେଇଥିଲା । ପରିଚାଳନା ବିଭାଗର ମୁଖ୍ୟ (ଡି.ଓ.ଏସ୍) ଅଫିସର୍ ଇନ୍‌କ୍ୱାରୀ ଶେଷ କରି ଡି.ଏସ୍. ସାହେବଙ୍କ ଦସ୍ତଖତ ଲାଗି ଫାଇଲ୍‌ଟି ପଠାଇଦେଲେ ।

ଫାତିମା ସ୍ୱାମୀକୁ ଚାହେଁ - ଏଡ଼େ ବଡ଼ ମଣିଷଟା ରୋଗ ବୈରାଗ ନଥାଇ ବି ଶୁଖି ଶୁଖି କଣ୍ଟା ହୋଇଗଲାଣି । ସବୁବେଳେ ଚୁପ୍, ପଦେ କଥା ନାହିଁ । ସେ ନିଜକୁ ହିଁ ଦୋଷୀ ମଣେ, ତା'ର ଲାଗି କାଦର୍‌ର ଚାକିରି ଯିବା ଉପରେ । ସେକେଣ୍ଡ ନାଇଟ୍ ଡ୍ୟୁଟି ହେଲେ ସେ ଖୁବ୍ ଚିଡ଼େ, ତାକୁ ଖୁସି କରିବାକୁ ଯାଇ କାଦର୍ ଏମିତି ପଙ୍କରେ ପଶିଛି । ସତରେ ଚାକିରି ଖଣ୍ଡ ଚାଲିଗଲେ ତା'ର ଏତେ ବଡ଼ ପରିବାର ଚଳିବ କେମିତି ?

ସେପ୍ଟେମ୍ବର ମାସ । ଏତେ ଦିନ ଧରି ଲଗାଣ ବର୍ଷା ପରେ ଖରା ପାଗଟା ବେଶ୍ ଭଲ ଲାଗୁଛି । ଡି.ଏସ୍. ସାହେବଙ୍କ ଗୋଡ଼ର ପ୍ଲାଷ୍ଟର୍ ଖୋଲା ହୋଇସାରିଲାଣି । ସେ ଓ ତାଙ୍କ ସ୍ତ୍ରୀ ସେଲି ବଗିଚାରେ ବସି ଚା' ପିଉଛନ୍ତି । ଏଇ ଦିନଟି ସେ ସ୍ତ୍ରୀଙ୍କ ସହିତ ବସି ଗପସପ କରନ୍ତି । ବଗିଚାରେ ବୁଲି ଗଛପତ୍ର ଦେଖନ୍ତି । ରେଲ୍‌ୱେ ଚାକିରି । ଯୁଦ୍ଧ

କ୍ଷେତ୍ରଠାରୁ ବି ବେଶୀ ଉଦ୍‌ବେଗଜନକ । ଏଠି ସବୁବେଳେ କାମ, ସବୁବେଳେ ଆକ୍‌ସିଡେଣ୍ଟର ଭୟ । ଚବିଶ ଘଣ୍ଟା ଗାଡ଼ି ଚାଲିଥିବ, ତେଣୁ ଯିଏ ଦାୟିତ୍ୱରେ ଅଛି ସେ ସବୁବେଳେ ସତର୍କ - କାଳେ ଆକ୍‌ସିଡେଣ୍ଟ ହୋଇଗଲା କି ? କେତେବେଳେ ଗାଡ଼ିର ଚକା ଲାଇନ୍ ଉପରୁ ଖସିଗଲାଣି ତ କେତେବେଳେ ମାଲ୍ ଗାଡ଼ିର କଡ଼ ଡବା ଯୋଡ଼ିଲା ବେଳେ କିଏ ଚିପି ହୋଇ ମରିଗଲାଣି । ପୁଣି ଯାହାର ଯାହା ଅସୁବିଧା ହେଲେ ସେମାନେ ଆସି ବସିପଡ଼ିବେ ରେଲ୍‌ଲାଇନ୍ ଉପରେ... । ସବୁ ଅସୁବିଧାକୁ ପଛରେ ପକେଇ ଦେଇ ରବିବାର ସକାଳଟା ମିଷ୍ଟର ବତୀବାଲା ସ୍ତ୍ରୀଙ୍କ ସହିତ କଟେଇବାକୁ ପସନ୍ଦ କରନ୍ତି । ରବିବାରେ ସେ ଅଫିସ୍ ଯାଆନ୍ତି, କିନ୍ତୁ ଡେରିରେ ।

ଗେଟ୍ ପାଖରେ ଜଗିଥିବା ସନ୍ତ୍ରୀ ଆସି ଖବର ଦେଲା, "ମେମ୍ ସାହେବ, ଗୋଟିଏ ସ୍ତ୍ରୀଲୋକ ଆପଣଙ୍କୁ ଦେଖା କରିବାକୁ ଚାହୁଁଛି, କାନ୍ଦୁଛି- ପଚାରିଲେ କିଛି କହୁନି । "ଶ୍ରୀମତୀ ବତୀବାଲା ଚାହିଁଲେ ସ୍ୱାମୀଙ୍କୁ । କଥା ହେଲା ଡି.ଏସ୍ ସାହେବ ଡିଭିଜନ୍‌ର କର୍ମଚାରୀମାନଙ୍କର ଦାୟିତ୍ୱରେ, କିନ୍ତୁ ତାଙ୍କ ସ୍ତ୍ରୀ କର୍ମଚାରୀମାନଙ୍କର ପରିବାରର ସମସ୍ତ ସୁଖଦୁଃଖ ବୁଝନ୍ତି । କାହାର ସ୍ୱାମୀ ମଦ ପିଇ ତାକୁ ଘର ଚଳେଇବାକୁ ଟଙ୍କା ନଦେଲେ ସେ ଦୌଡ଼ି ଆସେ ଡିଏସ୍ ମେମ୍‌ସାହେବଙ୍କ ପାଖକୁ । କାହାର ସ୍ୱାମୀ ଦୁର୍ଘଟଣାରେ ମରିଗଲେ ତା' ଟଙ୍କା-ପଇସା କିପରି ଶୀଘ୍ର ମିଳିବ ସେଥିପାଇଁ ସେ ଚାହେଁ ଡି.ଏସ୍. ସାହେବଙ୍କ ପତ୍ନୀଙ୍କୁ । କିଏ ପୁଅର ଚାକିରି ପାଇଁ ତ କିଏ କିଛି ଜଟିଳ ରୋଗର ଚିକିତ୍ସା ଲାଗି ଆର୍ଥିକ ସାହାଯ୍ୟ ମାଗେ ତାଙ୍କୁ । ବନ୍ୟା, ବାତ୍ୟା ବା ଘରପୋଡ଼ି ସବୁଥିରେ ଆଗେଇ ଆସନ୍ତି ଡି.ଏସ୍. ସାହେବଙ୍କ ସହଧର୍ମିଣୀ । ସେ ରେଲ୍‌ୱେ ମହିଳା ସଂଗଠନର ସଭାନେତ୍ରୀ । ତେଣୁ ଏସବୁ ତାଙ୍କୁ କରିବାକୁ ପଡ଼େ । ସ୍ୱାମୀ ଅଫିସ୍ କାମ ନେଇ ବ୍ୟସ୍ତ ରହିଲେ ଶ୍ରୀମତୀ ବତୀବାଲା ରେଲ୍‌ୱେ କର୍ମଚାରୀମାନଙ୍କର ପରିବାରର ସମସ୍ୟା ନେଇ ବ୍ୟସ୍ତ ରହନ୍ତି । ବ୍ରିଟିଶ୍ ଅମଳରୁ ଏଇଟା ରେଲ୍‌ୱେର ପ୍ରଚଳିତ ପ୍ରଥା - ଟ୍ରାଡ଼ିସନ୍ ଓ କଲ୍‌ଚର୍ ।

ଶ୍ରୀମତୀ ବତୀବାଲା ସନ୍ତ୍ରୀକୁ କହିଲେ, "ହଉ, ଡ଼ାକି ଦେ ତାକୁ ।"

କିଛି ସମୟ ପରେ ବୁରଖା ପରିହିତା ଜଣେ ନାରୀ ପ୍ରବେଶ କଲେ, ତାଙ୍କ ପଛେରେ ଚଉଦ ବର୍ଷରୁ ଆରମ୍ଭ କରି ଦୁଇ ବର୍ଷ ଯାଏଁ ସବୁ ଆକାର ଓ ଉଚ୍ଚତାର ଗୁଡ଼ାଏ ପିଲା ପଶି ଆସିଲେ । ପାରେଡ୍ କଲା ପରି ସେମାନେ ଆସି ଲାଇନ୍ କରି ଠିଆ ହୋଇ ପଡ଼ିଲେ । ସ୍ତ୍ରୀ ଲୋକଟି ମୁହଁ ଉପରୁ ଆବରଣକୁ ଉଠାଇ ଦେଲେ । ତାଙ୍କ ଆଖି ଦୁଇଟା କାନ୍ଦି କାନ୍ଦି ନାଲି ।

ଶ୍ରୀମତୀ ବତୀବାଲା ପଚାରିଲେ, "କ'ଣ ଅସୁବିଧା ହୋଇଛି ତୁମର ?"

"ମେମ୍ ସାହେବ, ମେରେ ବଚେ ମର୍ ଯାଏଗେଁ - ଉନ୍‌କା ଆବା କେ ସିବା ଏକ୍

ଫୁଟା କୌଡ଼ି ଦେବେନେ କେ ଲିଏ କୋଇ ନହିଁ ହେ... କେବଲ୍ ଆପ୍ ହିଁ କୁଛ କର୍ ସକେଙ୍ଗେ... ।" କହୁ କହୁ ତା'ର କଣ୍ଠ ରୁଦ୍ଧ ହୋଇଗଲା ଓ ସେ କହିଁ କହିଁ ହୋଇ କାନ୍ଦିବାକୁ ଲାଗିଲା । ପିଲାମାନେ ସମସ୍ତେ ମାଆ ସହିତ କାନ୍ଦି ଉଠିଲେ । ଲାଇନ୍ ଶେଷରେ ଠିଆ ହୋଇଥିବା ସବୁଠାରୁ ସାନ ପୁଅଟା କାନ୍ଦୁ କାନ୍ଦୁ ପରିସ୍ରା କରିଦେଲା ।

ମିଷ୍ଟର ବତୀବାଲା ଚୌକିରେ ବସି ସେମାନଙ୍କୁ ଚାହିଁଥାଆନ୍ତି । ଛଅଟାଯାକ ପିଲାଙ୍କୁ ଦେଖିଲେ ମନେ ହେଉଛି କେତେଦିନ ହେଲା ଏମାନଙ୍କୁ ଭଲ କରି ଖାଇବାକୁ ମିଳିନି । ଦେହରେ ହଜାରେ ସିଲାଇ ଓ ତାଳିପକା ଲୁଗା । କାହାର ଆଖି କୋଣରେ ଲେଞ୍ଜେରା ତ କାହାର ନାକରୁ ସିଂଘାଣି ବୋହିପଡୁଛି । ସମସ୍ତଙ୍କ ଅବସ୍ଥା ଦୟନୀୟ ।

ଶ୍ରୀମତୀ ବତୀବାଲା ଉଠିଯାଇ ସ୍ତ୍ରୀଲୋକଟିର ପିଠିକୁ ଆଉଁଶି ଦେଇ ଦୟାର ସହିତ କହିଲେ, "କହ, କ'ଣ ଅସୁବିଧା । ସାହେବ ଏଇଠି ଅଛନ୍ତି, ଶୁଣିଲେ ନିଶ୍ଚୟ କିଛି ସାହାଯ୍ୟ କରିବେ ।"

ଫତିମା ମୁଣ୍ଡ ତଳକୁ କରି ତା' ସ୍ୱାମୀର ସମସ୍ତ ଦୋଷକୁ ସ୍ୱୀକାର କଲା ଏବଂ ସେ ହିଁ ଏହାର ମୂଳ କାରଣ ବୋଲି ଜଣାଇଲା । ତା' ଦେହ ଖରାପ ହେବାରୁ କାଦର୍ ଏପରି ଅପରାଧ କରିବାକୁ ବାଧ୍ୟ ହୋଇଥିଲା । ସେ ନିର୍ମମ ଶାସ୍ତିର ଯୋଗ୍ୟ, କିନ୍ତୁ ଏ ନିରୀହ ପିଲାଗୁଡ଼ାଙ୍କର କି ଦୋଷ ? ସେମାନେ କ'ଣ ଭୋକ ଉପାସରେ ମରିବେ ? ସେମାନଙ୍କ ପାଇଁ ସେ ଦୟା ଭିକ୍ଷା କରୁଛି ।"

ପିଲାଗୁଡ଼ିକ ଜଣକ ପରେ ଜଣେ ହୋଇ ସାହେବ୍, ମେମ୍ ସାହେବଙ୍କ ଗୋଡ଼ ତଳେ ପଡ଼ିଗଲେ । ସବୁରି ଆଖିରେ ଲୁହ । ବତୀବାଲା ସାହେବ ବଗିଚାରୁ ଘର ଭିତରକୁ ଚାଲିଗଲେ । ଶ୍ରୀମତୀ ବତୀବାଲା ଧୈର୍ଯ୍ୟର ସହିତ ଫତିମାର ସବୁକଥା ଶୁଣିସାରି କହିଲେ, "ସାହେବ୍ ବଡ଼ କଡ଼ା ଲୋକ । ଡ୍ୟୁଟିରେ କିଏ ହେଳା କଲେ ସେ ସହନ୍ତି ନାହିଁ । ସେଥିରେ ତୁମ ସ୍ୱାମୀ ଯାହା କରିଛନ୍ତି ତା' ଅକ୍ଷମଣୀୟ । ଜାଣ ତ ସେଦିନ ସାହେବଙ୍କ ଅବସ୍ଥା କ'ଣ ହୋଇଥିଲା । ତଥାପି ମୁଁ ତାଙ୍କୁ ବୁଝେଇବାକୁ ଚେଷ୍ଟା କରିବି । ତା' ପରେ ତୁମ ଭାଗ୍ୟ ।

ଫତିମା ପିଲାଙ୍କୁ ଧରି ଚାଲିଗଲା, ଛାଡ଼ିଗଲା ତା'ର ଓ ତା' ପିଲାଙ୍କର ଦରଦଭରା ଛବି ବତୀବାଲା ଦମ୍ପତିଙ୍କ ହୃଦୟପଟ୍ଟରେ ।

ମିଷ୍ଟର ବତୀବାଲା ଅଫିସ୍ ଚାଲିଗଲେ ଓ ଶ୍ରୀମତୀ ବତୀବାଲା ଚିନ୍ତାକଲେ କିପରି ଫତିମାକୁ ସାହାଯ୍ୟ କରିବେ । ଏପରି ଅପରାଧୀକୁ କ'ଣ ତାଙ୍କ ସ୍ୱାମୀ କ୍ଷମା କରିବେ ? ସ୍ୱାମୀଙ୍କର ପ୍ରକୃତି ସେ ଜାଣନ୍ତି । ଦୋଷୀକୁ ଉପଯୁକ୍ତ ଦଣ୍ଡ ନଦେଇ ସେ ଛାଡ଼ିବା ଲୋକ ନୁହନ୍ତି ।

ପୂରା ରବିବାରଟା ସେଲି ବତୀବାଲାଙ୍କର ଚାଲିଗଲା କିପରି ସ୍ୱାମୀଙ୍କୁ ମନାଇବେ

କାଦର୍ ଖାଁର ବରଖାସ୍ତ ଆଦେଶଟା ବାତିଲ୍ କରିବା ପାଇଁ । ଫତିମା ଓ ତା' ପିଲାମାନଙ୍କର ବିକଳ ମୁହଁ, ସେମାନଙ୍କର ଲୁହଭରା ଆଖି ତାଙ୍କୁ ବିବ୍ରତ କରି ପକାଉଥାଏ । ତଥାପି ସେଦିନ ସେ ସାହସ କରି କିଛି କହିପାରିଲେ ନାହିଁ କାଦର୍ ଖାଁର ସପକ୍ଷରେ ।

ସୋମବାର ସକାଳେ ମିଷ୍ଟର୍ ବତୀବାଲା ଅଫିସ୍ ଯିବା ପୂର୍ବରୁ ଶ୍ରୀମତୀ ତାଙ୍କୁ ଅନୁରୋଧ କରି କହିଲେ, 'କାଦର୍ ଖାଁର ଡିସ୍‌ମିସ୍ ଫାଇଲ୍‌ଟା ଆଜି ତୁମ ପାଖକୁ ଫାଇନାଲ୍ ଦସ୍ତଖତ ପାଇଁ ଆସିବା କଥା । ଯଦି ପାର ଟିକିଏ ଦୟା କରିବ ତାକୁ । କାଲି ଦେଖିଛ ତ ତା' ପୂରା ପରିବାରର ଅବସ୍ଥା ।

ମିଷ୍ଟର ବତୀବାଲା ସ୍ତ୍ରୀଙ୍କୁ ଚାହିଁଲେ । ତାଙ୍କ ଚାହାଣୀରେ ଭରି ରହିଥିଲା ଯୁଗଯୁଗର ପ୍ରତିହିଂସା ଓ କଠୋରତା । ସେ ଗମ୍ଭୀର ସ୍ୱରରେ ଉତ୍ତର ଦେଲେ । ଭୁଲିଗଲଣି କାଦର୍ ଖାଁ ଲାଗି ମୋ ଅବସ୍ଥା କ'ଣ ହୋଇଥିଲା ?

ସେଲି ବତୀବାଲାଙ୍କ ପାଇଁ ସେତିକି ଯଥେଷ୍ଟ । ସେ ବୁଝିଗଲେ ନିଜର ପରାଜୟ । କିଛି ଉତ୍ତର ନଦେଇ ରନ୍ଧା ଘରକୁ ଚାଲିଗଲେ । ମନେ ମନେ ଭାବିଲେ, "କାହିଁକି ଲୋକମାନେ ଏତେ ଆଶା ନେଇ ତାଙ୍କ ପାଖକୁ ଆସନ୍ତି ? ସେମାନଙ୍କର ଜାଣିବା ଉଚିତ ଅଫିସିଆଲ୍ ସ୍ତରରେ ତାଙ୍କର କିଛି କରିବାର କ୍ଷମତା ନାହିଁ । ସ୍ୱାମୀଙ୍କୁ ଅନୁରୋଧ କରିବା ଛଡ଼ା ସେ ଆଉ କ'ଣ କରିପାରିବେ ?

ଇତିମଧ୍ୟରେ ଦୁଇମାସ ଚାଲିଗଲାଣି । ଫତିମା ତାଙ୍କ ପାଖକୁ ଆଉ ଆସିନି । କାହିଁକି ବା ଆସିବ । ତଥାପି ତା' ମୁହଁଟା ଅନେକଥର ସେଲି ବତୀବାଲାଙ୍କ ଆଖି ସାମ୍ନାରେ ଭାସିଯାଏ ଓ ସେତେବେଳେ ତାଙ୍କର ସ୍ୱାମୀଙ୍କ ଉପରେ ଭାରି ଅଭିମାନ ହୁଏ ।

ସେଦିନ ରବି, ଅଫିସ୍ ଛୁଟି, ଅଳ୍ପ ଅଳ୍ପ ଶୀତ ପକାଉଛି, ଉଷୁମ ସୂର୍ଯ୍ୟକିରଣ ଲନ୍‌ର ମଖମଲି ଘାସ ଉପରେ ବିଛେଇ ହୋଇ ପଡ଼ିଛି । ବଗିଚା ଫୁଲରେ ଭରି ଯାଇଛି । ପ୍ରଜାପତିମାନଙ୍କ ବିଚରଣ ପାଇଁ ଉପଯୁକ୍ତ ସ୍ଥାନ ହୋଇଛି । ଏମିତି ସକାଳଟା ମିଷ୍ଟର ବତୀବାଲାଙ୍କୁ ଭାରି ଭଲ ଲାଗେ । ସେ ବଗିଚାରେ ବସି ଚା' ପିଅନ୍ତି, ଫୋନ୍ କରନ୍ତି । ଦଶ ପନ୍ଦର ମିଟରର ଲମ୍ବା ତାର ଫୋନ୍ ସହ ଲମ୍ବିଥାଏ । ଫୋନ୍‌ଟା ଧରି ସେ ବଗିଚା ସାରା ବୁଲନ୍ତି, ଲିଲି ପଣ୍ଡ ପାଖେ ବସି ଖବରକାଗଜ ପଢ଼ନ୍ତି । ସ୍ୱାମୀ ସ୍ତ୍ରୀ ଉଭୟେ ବଗିଚାରେ ଖରାଫିଠିଆ ହୋଇ ବସି ଚା' ପିଉଛନ୍ତି ଏହି ସମୟରେ ଜଣେ ବୁରଖା ପିନ୍ଧା ସ୍ତ୍ରୀଲୋକ ଗୋଟିଏ ଚଉଦ, ପନ୍ଦର ବର୍ଷର ଝିଅ ସହ ଆସି ପହଞ୍ଚିଲା । ଝିଅଟି ହାତରେ ଗୋଟାଏ ବିରାଟ ଟିଫିନ୍ କ୍ୟାରିଅର୍ ।

ନିଜ ମୁହଁ ଉପରୁ ଓଢ଼ଣାଟା କାଢ଼ିଦେଇ କାନ୍ଦ କାନ୍ଦ ସ୍ୱରରେ ସେ କହିଲା, 'ସଲାମ୍ ମେମ୍ ସାହେବ୍ - ଆଲ୍ଲା ଆପ୍‌କା ଭଲା କରେ... । ଆପଣଙ୍କ ଲାଗି ମୋ ପିଲାମାନେ

ମୁଠାଏ ଖାଇବାକୁ ପାଉଛନ୍ତି, ମୁଁ ମରିବା ଯାଏଁ ଆପଣଙ୍କ ଋଣ ସୁଝିପାରିବି ନାହିଁ । ମୁଁ ଗରିବ ସ୍ତ୍ରୀ ଲୋକଟାଏ, ଆପଣଙ୍କୁ କ'ଣ ବା ଦେଇପାରିବି ? ଆଜି ଇଦ୍, ଅଳ୍ପ ବିରିଆନି କରି ଆପଣଙ୍କ ପାଇଁ ଓ ସାହେବଙ୍କ ପାଇଁ ଆଣିଛି... ।"

ଶ୍ରୀମତୀ ବତୀବାଲା ଚାହିଁଲେ ସ୍ୱାମୀଙ୍କ ଆଡ଼କୁ । ତେବେ ଏ ଲୋକଟି କାଦର୍ ଖାଁର ଡିସ୍‌ମିସ୍ ଅର୍ଡ଼ର୍ କ୍ୟାନ୍‌ସଲ୍ କରି ତାଙ୍କୁ କିଛି କହିନି ଏତେ ଦିନ ଯାଏଁ । ଯେଉଁ ଲୋକକୁ ସେ ବଜ୍ରପରି କଠୋର ବୋଲି ଭାବି ଆସିଥିଲେ ତା' ହୃଦୟ ଯେ ଲହୁଣୀପରି ନରମ ସେ କଥା ସେ ଜାଣନ୍ତେ କେମିତି ? ସ୍ୱାମୀଙ୍କ ଉଦାରତା ପାଖେ ତାଙ୍କ ମୁଣ୍ଡ ନଇଁ ଆସିଲା । ସେ ଭୁଲିଗଲେ ତାଙ୍କ ଭିତରେ ଜମାଟ ବାନ୍ଧିଥିବା ଅଭିମାନକୁ ।



# ଆତ୍ମୀୟ

## କ୍ଷୀରୋଦ ଦାସ

ପଶ୍ଚିମାକାଶରେ ଖଣ୍ଡଖଣ୍ଡ ବହଳ ମେଘର ନେପଥ୍ୟରେ ବୟସ୍କ ସୂର୍ଯ୍ୟ ଅନେକ ବେଳୁ ଲୁଚି ଗଲେଣି । ଅନ୍ୟ ଦିନମାନଙ୍କ ପରି ବାଲିକୂଦ ସେପଟେ ପଠା ଭିତରର ମଶାଣି ଭିତରୁ ଶୁଭୁଥିଲା କେତୋଟି କୁକୁର ଏବଂ ବିଲୁଆମାନଙ୍କର ମିଳିତ ସ୍ୱର । ଝାଉଁ ଗଛର ମଥାନ ଉପରେ ବିଜୁଳି ରହି ରହି ଲୁଚକାଳି ଖେଳୁଥିଲା ଶିଶୁର ଆଖିପରି ନିଷ୍ପାପ ତଥା ନିରିମାଖି ଆକାଶ ସାଥିରେ । ଝିପି ଝିପି ବର୍ଷା ସାଙ୍ଗକୁ ପ୍ରଚୁର ହେମାଳ ପବନ ହେତୁ ଚାରିଆଡ଼ ଶୂନ୍‌ଶାନ୍ ହୋଇ ଆସୁଥିଲା ରାତି ସାଢ଼େ ଆଠ କି ନ'ଟା ଭିତରେ । ତମାମ୍ ପଠାଟା ନିଶବ୍ଦ ଓ ନିର୍ଜନ ରାତି ଭିତରେ ସତେ ଅବା ଘୁମେଇ ପଡ଼ିଥିଲା ଭୟରେ ! ପାଣିପାଗର ଏ ପ୍ରକାର ପରିସ୍ଥିତିରେ ନଈ ପଠାରେ ଅଧିକ ସମୟ ବସି ନପାରି ଆମେ ସବୁ ଫେରି ଆସୁଥିଲୁ ଘରକୁ ।

ରାମ ନାମ ସତ୍ୟ ହେ...

ପେଟ୍ରୋମାକ୍ସ ଲାଇଟ୍‌ରେ ସୌଜନ୍ୟରୁ ଦେଖା ଯାଉଥିଲା ଦଳେ ମଣିଷ କାନ୍ଧେଇଥିଲେ ଗୋଟିଏ ଶବ ଏବଂ ଚାଲିଥିଲେ ପଠା ସେପଟ ମଶାଣି ଅଭିମୁଖେ । ମେଘ ଅନ୍ଧାର ରାତି ସାଙ୍ଗକୁ ପ୍ରଚୁର ନିର୍ଜନତା, ଝିପି ଝିପି ବର୍ଷା ସାଙ୍ଗକୁ ବିଜୁଳି ଓ ଘଡ଼ଘଡ଼ି, ଏସବୁ ମିଶି ଗୋଟାଏ ଭୟ ଉଦ୍ରେକକାରୀ ପରିବେଶ ସୃଷ୍ଟି କରୁଥିଲେ ।

'କିରେ, ଏଇଟା କୋଉ ସାହିର ଶବ କିରେ ?' ଗଣେଶକୁ ମୁଁ ପଚାରିଲି- ଗଣେଷ କହିଲା- 'ବଡ଼୍‌ଡ଼ିଇ ସାହିର ସେଇ ଯୋଉ ପରିବା ବେପାରିଟା ଏକନମ୍ବର ହାଟରେ ଷ୍ଟିଲ୍ ଦୋକାନ ବାଁ ପାଖରେ ବସେ, କ'ଣ ତା ନାଁ... ହଁ, ଫକୀରା... ତା ପୁଅ ପରା ମରିଗଲା ଆଜି... ।'

'କ'ଣ କହିଲୁ !!' - ଗୋଟେ ପ୍ରଚଣ୍ଡ ଆଘାତରେ ମୋ ଛାତି ଭିତରଟା ମରୁଡ଼ି ହୋଇଗଲା । କେଇଟି ମୁହୂର୍ତ୍ତ ପାଇଁ ମୋ ଭିତରେ ସବୁକିଛି ଦୋହଲି ଉଠିଲା । ଭୁଲ୍ କଥାଟାଏ ଶୁଣି ପକାଇଲା ପରି ଆଉଥରେ ଗଣେଷ ଆଡ଼କୁ ଚାହିଁ ପଚାରିଲି - 'କ'ଣ କହିଲୁ ? ଫକୀରା ପୁଅ ମରିଗଲା !!'

'ହଁ' – ଗଣେଷ କହିଲା – 'ବିଚରା ଫକୀରଟା ଅନେକ କଷ୍ଟ କରିଥିଲା ପୁଅପାଇଁ ।'

ଗଣେଷର ଏ ଅପ୍ରତ୍ୟାଶିତ ଘୋଷଣା ମତେ ପ୍ରଚୁର ଯନ୍ତ୍ରଣା ଦେଲା । ଆଖି ଆଗରେ ଭାସି ଉଠିଲା ଫକୀରାର ସରଳ ମୁହଁଟି । କଳା ହୋଇ ବାଙ୍ଗରା ମଣିଷଟି । ଏକନମ୍ବର ହାଟର ସ୍କୁଟର ଷ୍ଟାଣ୍ଡ୍ ପାଖ ଷ୍ଟିଲ୍ ଦୋକାନର ଠିକ୍ ବାଁ ପାଖରେ ଅବସ୍ଥିତ ପରିବା ମାର୍କେଟ୍‌ର ଗୋଟାଏ କଣକୁ ଲାଗି ତାଳପତ୍ର ଘେରା ଛଳିଆଟିଏ । ତା'ର ଭିତରେ ଫକୀରା ବସେ ପନ୍ଦର କୋଡ଼ିଏ କିଲୋ ଆଳୁ, ବାଇଗଣ, କଲରା, ପିଆଜ, ଆଉ ରସୁଣ ଆଦି ପରିବା ଗହଣରେ ।

ଭାରି ହସ ଆଉ ମେଳାପୀ ଲୋକଟା । ତା ମୁହଁକୁ ଦେଖିଲେ ଯେ କେହି ଧାରଣା କରିବ ଯେ ଲୋକଟା ନିଜକୁ ଆଉ ତା ବେପାରକୁ ନେଇ ଖୁବ୍ ସନ୍ତୁଷ୍ଟ । ଜୀବନ ବିରୁଦ୍ଧରେ ଯେପରି ତାର ଫୁଣ୍ଟାଏ ବି ଅଭିଯୋଗ ନାହିଁ । ଗରାଖମାନଙ୍କ ସହିତ ସେ ଯେପରି କଥାହୁଏ ଲାଗିବ ଯେପରି କୋଉ ଆତ୍ମୀୟଙ୍କ ସହିତ ନିବିଡ଼ ଅନ୍ତରଙ୍ଗତାରେ ସେ ମଜ୍ଜି ଯାଇଛି । ଲୋକଟାର ବ୍ୟବହାରରେ କି ଆନ୍ତରିକତା ଭରି ରହିଥାଏ କେଜାଣି, ପ୍ରାୟ ସବୁବେଳେ ମୁଁ ତାର ଦୋକାନରୁ ପରିବା କିଣେ । ପରିବା ନୁହେଁ, ତା ମଧୁର ବ୍ୟକ୍ତିତ୍ୱ ହିଁ ମତେ ଆକର୍ଷିତ କରେ ।

ଗୋଟାଏ ଯନ୍ତ୍ରପରି ଫକୀରା ଗପେ ଅହରହ । ତା କଥାରେ ନ ଥାଏ ଏତେ ଟିକିଏ ଆବିଳତା କିମ୍ବା ସ୍ୱର୍ଦ୍ଧିତ ଅହଂକାର । ବେଶ୍ ମୁଗ୍‌ଧ ପ୍ରଶାନ୍ତିରେ ସ୍ୱଚ୍ଛ ଓ ପରିଚ୍ଛନ୍ନ ସେ, ତାର କଥା । ଯୁବକ ବେଳର ଅବିସ୍ମରଣୀୟ ରଂଗୀନ ତଥା ମଧୁର ସ୍ମୃତିଠାରୁ ଆରମ୍ଭ କରି ବର୍ତ୍ତମାନର ନିରାଟ ବାସ୍ତବତା ପର୍ଯ୍ୟନ୍ତ ସେ ଗପିଛେଲେ ମୋ ସହିତ । କେତେବେଳେ କେମିତି ଗରାଖ ଜଣେ ଆସିଗଲେ ସେ ଟିକେ ତୁନି ପଡ଼ିଯାଇ ଆଳୁ କିଲେ କି ପିଆଜ ଅଧାକିଲେ ତା ବ୍ୟାଗ୍ ଭିତରକୁ ବଢ଼ାଇ ଦିଏ । ପଇସା ନଗଣି ବ୍ୟାଗ୍ ଭିତରକୁ ପକାଇ ଦେବାବେଳେ ମୁଁ ଆପତ୍ତି କରେ- "ପଇସା ଗଣି ରଖ୍ ଫକୀରା । ଏମିତି ଆଖିବୁଜି ବେପାର କରାଯାଏନା ।"

ଅମାୟିକ ହସଟେ ଉତୁରି ପଡ଼େ ତା ମୁହଁରୁ- ବୁଝିଲେ ସା'ରେ, ବିଶ୍ୱାସଟା ହେଲା ଏ ସଂସାରରେ ବଡ଼ ଜିନିଷ । ବିଶ୍ୱାସ ନ ଥିଲେ ସବୁ ସତ ମିଛ ହୋଇଯାଏ, ସବୁ ମିଛ ସତ ହୋଇଯାଏ । ତାକୁ ତ ମୁଁ ଠିକ୍ ଠିକ୍ ଓଜନ କରିଦେଲି, ସେ କାହିଁକି ମତେ ଭୁଲ୍ ହିସାବ କରି ପଇସା ଦେବ ? ଆଁ ।।।

ହନୁହାଡ଼ ବାହାରି ପଡ଼ିଥିବା, ଏ ସଂସାରକୁ ଗୋଟେ ଆମୋଦପ୍ରଦ ସରଳ ସ୍ଥାନ ବୋଲି ବିଚାରୁ ଥିବା ଫକୀରାର ଅଭାବକ୍ଲିଷ୍ଟ ଝାଲୁଆ ମୁହଁକୁ ଚାହିଁ ମୋର କହିଦେବାକୁ ଇଚ୍ଛାହୁଏ- 'ତୋ ଦୃଷ୍ଟିକୋଣକୁ ସମ୍ମାନ ଦେବାପରି ମଣିଷମାନଙ୍କର ଘୋର ଅଭାବ ଏ

ପୃଥିବୀରେ । ତେଣୁ ବାବୁ ଫକୀରା, ବିଶ୍ୱାସରେ ନୁହେଁ, ଅବିଶ୍ୱାସ କରି ଏ ଜୀବନ ବଞ୍ଚ ଶିଖ୍ ।'

ପ୍ରକାଶ୍ୟରେ କୁହେ - 'ପାଣି ପିଇବ ଛାଣି... । ତୋ ଭବିଷ୍ୟତ କଥା ଚିନ୍ତା କର୍ । ବେପାରରେ ଏମିତି ଫୁଲା ଫାଙ୍କିଆ ହେଲେ ଚଳିବ !!'

'ବୁଝିଲ ବାବୁ ! - ଫକୀରା ଆହୁରି ଦାର୍ଶନିକ ପାଲଟିଯାଏ - ଆଜି ମଲେ କାଲି ଦି'ଦିନ । ଏ ଜୀବନଟା ତୁଚ୍ଛା ମାଟି ହାଣ୍ଡିଟେ । ପଡ଼ିଗଲେ ଢ଼ୋ । ସେଥିରେ କାଲିର ଚିନ୍ତା କ'ଣ ପାଇଁ । ଆଜି ବଞ୍ଚିଛି, ବାସ୍, ସେତିକି ଯଥେଷ୍ଟ । କାଲିକୁ ବଂଚିଥିଲେ ଦେଖାଯିବ ।'

ଅଧିକ ରାତି ହୋଇଗଲାଣି ଦେଖି ମୁଁ ଫେରିଆସେ । ମୂର୍ଖ ଲୋକଟାର ତାତ୍ତ୍ୱିକ କଥା କେଇପଦ ମନଭିତରେ ଭେଦିଯାଏ । ଘରେ ସ୍ତ୍ରୀ ଗରଗର ହୋଇ କୁହେ- 'ସଂଧ୍ୟାବେଳଠାରୁ ଗଲଣି ଯେ ଆସି ବାଜିଲାଣି ରାତି ନ' !' କୁଆଡ଼େ କୁଆଡ଼େ ବୁଲି ବାବୁ ଫେରୁଛନ୍ତି ଏତେବେଳକୁ । ରୋଷେଇ ହେବ କେତେବେଳେ ? କୁଆଡ଼େ ଥିଲ ଏତେବେଳଯାଏ, ଶୁଣେ !!

ମୁଁ କହିପାରେ ନା, ଜଣେ ଭଲ ମଣିଷ ହାବୁଡ଼ରେ ପଡ଼ିଯାଇଛି ଯେ ଜମା ମୁକୁଳି ପାରୁନି । କହିପାରେ ନା, ସବୁଦିନେ ସଂଧ୍ୟାବେଳେ ଟିକେ ତା' ଆଡୁ ବୁଲି ନ ଆସିଲେ ଜମା ଭଲ ଲାଗେନି ।

କେବଳ ମୋ ସହିତ ନୁହେଁ, ଅଧିକାଂଶ ଗରାଖଙ୍କ ସହିତ ଫକୀରା ଘନିଷ୍ଠତା ବଢ଼ି ଯାଉଥିଲା ଦିନକୁ ଦିନ । ଅପରଛନିଆ ମୂର୍ଖ ଲୋକଟା ପ୍ରତି ସମସ୍ତଙ୍କ ମନରେ ସୃଷ୍ଟି ହୋଇଯାଉଥିଲା ଗୋଟେ ଅନନ୍ୟ ସ୍ନେହ । ତା ଠାରୁ କିଛି ପାଇବା ଆଶାରେ ନୁହେଁ, ତାର ନିଷ୍କପଟ ମଧୁର ବ୍ୟବହାର ହିଁ ତାକୁ ଗରାଆନ୍ କରି ପକାଉଥିଲା ସମସ୍ତଙ୍କ ପାଖରେ । ଏହା ବାଦ୍ ଫକୀରାର ଆଉ ଜଣେ ଘନିଷ୍ଠ ବଂଧୁଥିଲା କାଳିଆ ଷଣ୍ଢଟିଏ । ସବୁଦିନ ଝୁଲିଝୁଲି ଆସି ଶୁଏ ତା ଦୋକାନ କଡ଼ରେ । ଆଉ କୁଆଡ଼େ ଯାଏନି । ଆଳୁ, ବାଇଗଣ, କୋବିଚୋପା ଆଦି ଖାଇସାରି ଶୋଇ ଶୋଇ ପାକୁଳି କରୁଥିବ । ରାତି ଅଧିକ ହେଲେ ଫକୀରା କୁହେ - 'ଯା...ପଳା...କାଲି ଆସିବୁ ।' ଷଣ୍ଢ ଉଠିବନି । ଫକୀରା ଆଳୁଟାଏ ତା ପାଟିରେ ଗୁଞ୍ଜି ଦେଉଦେଉ କୃତ୍ରିମ ରାଗରେ କହିବ- 'ଆରେ... ଯା, ମୋର ପରା ବେଳ ହେଲାଣି... ।' ଷଣ୍ଢ ଉଠିବ । ଭିଡ଼ିମୋଡ଼ି ହେବ । ଦୁଇ ଚାରିପାଦ ଆଗେଇ ଯାଇ ବୁଲିପଡ଼ି ତା ହମ୍ବାରଡ଼ି ଜରିଆରେ ଫକୀରାକୁ ଶୁଭରାତ୍ରି ଜଣାଇ ଧୀରେ ଧୀରେ ଅପସରିଯିବ । ତା ପରଦିନ ନିର୍ଦ୍ଧାରିତ ସମୟକୁ ପୁଣି ହାଜର ।

ଫକୀରା ଆଉ ଷଣ୍ଢ ଭିତରେ ସେ ପ୍ରକାର ଆତ୍ମିକ ସଂପର୍କ ରୀତିମତ ଗୋଟେ ଚର୍ଚ୍ଚାର ବିଷୟ ସେ ଅଞ୍ଚଳରେ ।

ସାନପୁଅର ଅସୁସ୍ଥତା ଯୋଗୁ ସେଦିନ ଆଉ ହାଟକୁ ଯାଇପାରିଲି ନାହିଁ ମୁଁ । ଅସୁସ୍ଥତା ବୋଇଲେ ଲାଳ ଝାଡ଼ା । ଔଷଧ ଦେଇଦେଇ ଥକିଗଲାଣି ସ୍ତ୍ରୀ । ବ୍ୟସ୍ତହୋଇ ମୁଁ ଡାକ୍ତର ପାଖକୁ ଯାଇ ଔଷଧ ନେଇ ଘରେ ପହଞ୍ଚିବାର ଅଧଘଣ୍ଟା ପରେ ଫକୀରା ଆସି ହାଜର । ସାଙ୍ଗରେ କିଛି ପରିବା ଏବଂ ଗଛ ପାଚିଲା ଆମ୍ବ । ପୁଅ କଥା ଶୁଣି ସେ ବ୍ୟସ୍ତ ହୋଇପଡ଼ିଲା ଏବଂ ଅଧଘଣ୍ଟାଏ ଭିତରେ ଆସୁଛି କହି ଚାଲିଗଲା । ପ୍ରାୟ ଘଣ୍ଟାକପରେ ଦୁଇଟା କଞ୍ଚା ଡାଳିମ୍ବ ଏବଂ କଞ୍ଚା ଲେମ୍ବୁଧରି ଆସି ପହଞ୍ଚିଲା ସେ । କହିଲା- ଏଥିରୁ ଗୋଟାଏ ବାଟି ପୁଅକୁ ପିଆଇ ଦିଅ...ମା । ସବୁ ଠିକ୍ ହୋଇଯିବ ।

କହିବା ବାହୁଲ୍ୟ ସେ ଦେଇଥିବା ଡାଳିମ୍ବ ରସରେ ହିଁ ପୁଅର ଝାଡ଼ା ବନ୍ଦ ହୋଇଗଲା । ଫକୀରା ପ୍ରତି ମୋର ଅନୁରାଗ ବହୁଗୁଣରେ ବୃଦ୍ଧି ପାଇଗଲା ଖାସ୍ ଏଇ କାରଣ ଯୋଗୁଁ ।

ସେଦିନ ଫକୀରାକୁ ଦେଖି ମୁଁ ବିସ୍ମିତ ହୋଇଗଲି । ତା ମୁହଁଟା ଦେଖାଯାଉଥିଲା ଥମ୍‌ଥମ୍ । ଆଶଙ୍କା ତଥା ଦୁଃଖର ଓଜନରେ ସେଁ ବିଚଳିତ ହୋଇ ପଡୁଥିଲା । ପଚାରିଲି - 'କ'ଣ ହେଲା ଫକୀରା ? ଦେହ ଭଲ ନାହିଁ କି ?'

'ମନଟା ଭଲ ନାହିଁ ବାବୁ' - ଫକୀରା କହିଲା- 'ଟୋକାଟା ଦେହ ଖରାପ୍ । କହି ରଖେ, ପୁଅକୁ ଫକୀରା ଟୋକା ବୋଲି ହିଁ କୁହେଁ ।'

କଣ ହୋଇଛି ତା'ର ? - ମୁଁ ପଚାରିଲି ।

'କେଜାଣି !' -ଫକୀରା ଭିତରେ କରୁଣତାର ଝଡ଼ଟିଏ ସୃଷ୍ଟିହେଲା ସତେ ଯେପରି । ଗୋଟାଏ ଦୟନୀୟ କଂପନ ତାକୁ ଅସ୍ଥିର କରି ପକାଇଲା । ତା ମୁହଁର ଆକୃତି ଦେଖାଗଲା ଭାରି କାନ୍ଦ କାନ୍ଦ । ନିଜ ଭିତରେ ଉତ୍ପାତ କରୁଥିବା ଯନ୍ତ୍ରଣାଦଗ୍ଧ କ୍ଷତଟାକୁ ଚପାଇବାକୁ ଉଦ୍ୟମ କରୁକରୁ ବାଷ୍ପାକୁଳ କଣ୍ଠରେ କହିଲା- 'ସାତ ଆଠଦିନ ହେଲାଣି ଜମା ଖାଉନି । ଯାହା ଟିକେ ପାଟିକୁ ନଉଚି ବାନ୍ତି କରୁଛି । କହୁଛି ତଳିପେଟ ଭିତରଟା ଭାରି ବିନ୍ଧୁଛି । ମୁଣ୍ଡ ବୁଲାଉଚି । କାଲି ରାତିରୁ ପେଟ ପେଟ କହି ଖାଲି ଗଡୁଚି । ମୁଁ କ'ଣ କରିବି କିଛି ଭାବି ପାରୁନି ବାବୁ ..... ।'

ତାକୁ ଡାକ୍ତର ଦେଖାଇଥିଲ ? ପଚାରିଲି ।

'ହଁ' । ଛ ନମ୍ବର ମେଡ଼ିକାଲ୍ ନେଇଥିଲି । ଫଟୋ ଉଠାଇଛି । ଝାଡ଼ା, ରକ୍ତ ପରୀକ୍ଷା କରିବାକୁ ଦେଇଛି । - ଫକୀରାର ଏଇ କେଇପଦ କଥା ସୂଚେଇ ଦେଉଥିଲା ଯେ ସତେ ଯେପରି କ'ଣ ଗୋଟାଏ ତାକୁ ଭିତରେ ଭିତରେ ଖୁବ୍ ନିର୍ଯ୍ୟାତିତ କରୁଛି ଏବଂ ସେ ପୁଞ୍ଜିଭୂତ ନିର୍ଯ୍ୟାତନା ରୂପାନ୍ତରିତ ହୋଇଯାଉଛି ଗୋଟେ ଅନନ୍ତ କୋହରେ । ପରିଣାମ ସ୍ୱରୂପ ତା ସଦା ହସ ହସ ପ୍ରସନ୍ନ ମୁହଁଟା ଧସକି ପଡୁଛି ଅଁଣାୟତ ଦୁଃଖରେ ।

ତୁ ଜମା ବ୍ୟସ୍ତ ହ'ନା । ଆଶ୍ୱାସନା ଦେଲି ଫକୀରାକୁ । - ସବୁ ଠିକ୍ ହୋଇଯିବ ।

କଣ ଟିକେ ପେଟ ଭିତରଟା ବିଗିଡ଼ି ଯାଇଛି । ପାନେ ଔଷଧ କିମ୍ବା ଗୋଟିଏ ଇଂଜେକ୍‌ସନ୍‌ରେ କୁଆଡ଼େ ଛାଡ଼ି ପଳାଇବ ରୋଗ । ଦେଖିବୁ କାଲି ଛାଡ଼ି ପଅରଦିନକୁ ତୋ ପୁଅ ସାଇକେଲ୍ ଚଢ଼ି କଲେଜ ଯିବ । କାଲି ତ ସୋମବାର, ହାଟବନ୍ଦ । ମଙ୍ଗଳବାର ଦିନ ମତେ ତା ରିପୋର୍ଟ ସବୁ ଦେଖାଇବୁ ତ ।।

ପୁଅର ଆରୋଗ୍ୟକାମନା ଜନିତ ଦୁଇପଦ କଥା ଶୁଣି ଫକୀରାର ମୁହଁ ମୋ ପ୍ରତି ନାହିଁନଥିବା ଗୋଟେ କୃତଜ୍ଞତାରେ ଭରି ଯାଇଥିଲା । କାନ୍ଧରେ ପକାଇଥିବା ଗାମୁଛାରେ ସେ ମୁହଁ ପୋଛିଲା ଏବଂ କହିଲା – 'ହଉ' ।

'ହଉ' । – ଏଇ ପଦକ କଥା ହିଁ ଥିଲା ଫକୀରାଠାରୁ ମୋ ପାଇଁ ଶେଷ ଶବ୍ଦ । ସେଇ ଦିନଠାରୁ ଆଉ ସେ ହାଟକୁ ଆସି ନାହିଁ । ତା ବସିବା ସ୍ଥାନରେ ସେ କାଳିଆ ଷଣ୍ଢଟି ଆସି ଶୋଇଥିଲା ଏବଂ ବୋଧେ ମନେ ମନେ ଖୁବ୍ ଖୋଜୁଥିଲା ତା ଅନ୍ନଦାତାକୁ । ଫକୀରା କାହିଁକି ହାଟକୁ ଆସୁନାହିଁ, ଏକଥା ବୁଝିବାକୁ ଦୁଇ ତିନିଥର ବାହାରିଥିଲି ତା ଘରୁ ଘେରାଏ ବୁଲି ଆସିବି ବୋଲି । ହେଲେ କଣ ପାଇଁ କେଜାଣି ଯାଇ ପାରି ନଥିଲି । ଆଠ ଦଶଦିନ ପରେ ଶୁଣିଲି ତା ପୁଅର କିଡନୀ ନଷ୍ଟ ହୋଇଯାଇଛି । ସାରା ଜୀବନରେ ମେହନତିରେ ଅତି କଷ୍ଟରେ ତିଆରି କରିଥିବା ତିନି ବଖୁରିଆ କୋଠା ଘରଟିକୁ ସେ ଘରେ ଭଡ଼ାରେ ରହୁଥିବା ଏଇ.ଆଇ.ସି. ବାବୁ ଜଣକୁ ବିକିଦେଇ ଟଙ୍କା ଧରି ପୁଅକୁ ନେଇ ସେ ପଳାଇଛି ବମ୍ବେ ।

ବମ୍ବେ ହସ୍‌ପିଟାଲ୍‌କୁ ଯିବା ପୂର୍ବରୁ ତାକୁ ଟିକେ ଦେଖା କରି ନ ପାରିବାର ଚିନ୍ତାଟି ମତେ ଦଂଶନ କରୁଥିଲା ବାରମ୍ବାର । ହେଲେ ଆଜି ଦେଖିଲା ବେଳକୁ ଫକୀରାର ଜବାନ୍ ପୁଅଟା କୋକେଇରେ ବନ୍ଧାହୋଇ ବୁହା ହେଉଛି ମଶାଣି ଅଭିମୁଖେ । ବୁଝିକରି ଖବର ନେଲି ଯେ ବମ୍ବେରୁ ଡାକ୍ତରମାନେ ରୋଗୀକୁ ଫେରାଇ ଦେଲେ ଆଉ ଜୀବନର ଆଶା ନାହିଁ ବୋଲି । ଦଶବାର ଦିନ ପୂର୍ବେ ଫକୀରା ଆପାତତଃ ସଂଜ୍ଞାହୀନ ପୁଅକୁ ଧରି ପଳେଇ ଆସିଥିଲା ଭୁବନେଶ୍ୱର । ହେଲେ ଆଜି ସବୁକିଛି ଶେଷ । ଏ ଦୁର୍ଦ୍ଦିନରେ ତା ପାଖରେ ଟିକେ ଠିଆ ହୋଇ ପାରିଲିନି । ମନ ଭିତରଟା ଗୋଟେ ଅବଶୋଷ ବୋଧରେ ଜଡ଼ ସଡ଼ ହୋଇଯାଇ ମତେ ଦୋଷୀ ଦୋଷୀ କରି ପକାଉଥିଲା ।

ପରିସ୍ଥିତିର ସାମ୍ନାରେ ମଣିଷ ତୁଚ୍ଛା ଖେଳନାଟିଏ । ତା ଆଗରେ ମଣିଷର ଯାବତୀୟ ବିଦ୍ୟାବୁଦ୍ଧି, ସବୁ ଚାଲାଖି, ସମସ୍ତ ପାରିବାର ପଣ ଲୋପ ପାଇଯାଏ । ସେ ଆଦୌ ବୁଝି ପାରେନା ସମୟ ତା ପାଇଁ ତିଆରି କରୁଥିବା ଭବିଷ୍ୟତ ନକ୍‌ସାର ରୂପରେଖ । ପ୍ରଚୁର ଅର୍ଥ ତଥା ସମ୍ମାନର ଅଧିକାରୀ କୁହାଯାଉଥିବା ମଣିଷଟି ଯେ ସ୍ୱାସ୍ଥ୍ୟ ସଂପର୍କୀୟ ବଳିଷ୍ଠ ପ୍ରତିରକ୍ଷାର ଅଧିକାରୀ ହୋଇଥିବ, ଏକଥା ଆଦୌ କୁହାଯାଇ ପାରେନା । କାଲି ସକାଳୁ ଫକୀରା ଘରକୁ

ଯାଇ ତାକୁ ଟିକେ ଦେଖି ଆସିବାର ନିଷ୍ପତ୍ତି ନେବାବେଳକୁ ଠିକ୍ ସେଇଦିନ ରାତିରେ ହେଲା ମୋ ପେଟରେ ପ୍ରବଳ ଯନ୍ତ୍ରଣା । ରାତାରାତି ହସ୍ପିଟାଲ୍‌ରେ ଭର୍ତ୍ତି ହେବାକୁ ପଡ଼ିଲା । ପ୍ରଥମେ ବ୍ଲଡ୍, ୟୁରିନ୍ ଏବଂ ଷ୍ଟୁଲ୍ ଟେଷ୍ଟ୍ ପରେ ଯେତେବେଳେ ଏକ୍ସ-ରେ କରାଗଲା, ଜଣା ପଡ଼ିଲା ଆପ୍ରେଣ୍ଡି ଟାଇଟ୍ସ । ଅପରେସନ୍ ମଷ୍ଟ୍ । ହସ୍ପିଟାଲ୍‌ର ଅସହ୍ୟ ପରିବେଶ ଭିତରୁ ମୁକୁଳିବାକୁ ଲାଗିଲା ପାଖାପାଖି ମାସେ । ପ୍ରଚୁର ଦୁର୍ବଳତା ହେତୁ ଡାକ୍ତରଙ୍କ ପରାମର୍ଶାନୁଯାୟୀ ଅଗତ୍ୟା ଘରେ କେବଳ ଶୋଇ ରହିବାକୁ ହେଲା ମତେ । ଏତେ ଅସୁବିଧା ଭିତରେ ବି ଫକୀରାର ଦୁଃଖ ବିଜଡ଼ିତ ମୁହଁଟି ରହି ରହି ଉଭା ହେଉଥିଲା ମୋ ସାମ୍ନାରେ ।

ପ୍ରାୟ ତିନିମାସ ପରେ ଦିନେ ମୋ ସ୍କୁଟର୍ ଅଟକିଲା ଯାଇ ଫକୀରାର ତିନି ବଖୁରିଆ ଘର ସାମ୍ନାରେ । ଫକୀରାର ଏ ଦୁର୍ଦ୍ଦିନରେ କେମିତି ମୁଁ ତାକୁ ସାମ୍ନା କରିବି, ସେଇ କଥା ଭାବୁ ଭାବୁ କଲିଂବେଲ୍ ସୁଇଚ୍‌ରେ ହାତ ଦେଲି । କବାଟ ଖୋଲି ଉଭାହେଲେ ଜଣେ ସୁନ୍ଦରୀ ମହିଳା । ଫକୀରା ବିଷୟରେ ପଚାରିବାରୁ ଆଗରୁ ଯେପରି ମୁଖସ୍ଥ କରିବା ପରି ଆରମ୍ଭ କଲେ- 'ଘରଟାକୁ ତ ଆମକୁ ଆଗରୁ ବିକି ଦେଇଥିଲା । ପୁଅ ମଲାପରେ ଦୟା ଦେଖାଇ ତାକୁ ପାଖରେ ରଖିଲୁ । ପୁରା ପାଗଳ ହୋଇଗଲା । କଂସା ଡାଟିଆ ଫୋପଡ଼ା ଫିଙ୍ଗା କଲା । ଘରଦ୍ୱାର ଅସନା କଲା । ସ୍ତ୍ରୀ ଲୋକଟି ଟିକେ ଚୁପ୍‌ରହି ପୁଣି ଯୋଗକଲା - ଏଇ ପନ୍ଦର ଦିନ ହେବ କୁଆଡ଼େ ଯେ ଗଲା, ବାବୁ ତାକୁ ଖୋଜି ଖୋଜି ନୟାନ୍ତ ହେଲେଣି । କୁଆଡ଼େ ଗଲା କେଜାଣି !! ସ୍ତ୍ରୀ ଲୋକଟି ଏତକ କହିଲା ଏବଂ ଅପରିଚିତ ମଣିଷଟିଏ ସାମ୍ନାରେ ଏସବୁ କାହିଁକି ଗପୁଚି ବୋଲି ମନେ ମନେ ଅପ୍ରସ୍ତୁତ ହୋଇଯାଇ ଧଡାସ୍ କରି କବାଟ ବନ୍ଦ କରିଦେଲା ।

ବିଷର୍ଣ୍ଣ ମନରେ ଘରକୁ ଫେରି ଆସିଲି । କିଛି ଭଲ ଲାଗିଲାନି । ଭିତରେ ଭିତରେ କ'ଣ ଗୋଟାଏ ଯେପରି ଚୁରମାର ହୋଇ ଯାଉଥିବା ପରି ଲାଗିଲା ମତେ । ସଂଧ୍ୟାବେଳ ଏକ ନମ୍ବର ହାଟକୁ ବାହାରିଲି । ଫକୀରାର ନିର୍ଦ୍ଧାରିତ ସ୍ଥାନଟା ଶୂନ୍ୟ ପଡ଼ିଥିଲା ଏବଂ ସେଠି ତା ଆପଣାର କାଳିଆ ଷଣ୍ଢଟି ଶୋଇ ଶୋଇ ଅପେକ୍ଷା କରୁଥିଲା ମୁନିବକୁ । ପାକୁଳି କରୁକରୁ ବୋଧେ ହାତଛଡ଼ା ହୋଇ ଯାଉଥିବା ଅତୀତକୁ ରୋମନ୍ଥନ କରୁଥିଲା । ବେଳେ ବେଳେ ଷଣ୍ଢଟି କାନ ଦୁଇଟାକୁ ଟେକି ଦେଇ କାହାକୁ ଗୋଟେ ଖୋଜିଲାପରି ହେଉଥିଲା । ଲାଗୁଥିଲା, ଗୋଟେ ହଜିଲା ପ୍ରତିଧ୍ୱନି ଜୀବନ୍ତ ହୋଇ ଉଠି ସହସା ମିଳାଇ ଯାଉଚି ତା ସାମ୍ନାରୁ । ତା ମୋହମୁକ୍ତ ନିର୍ଲିପ୍ତ ମୁହଁକୁ ନିରିଖେଇ ଲକ୍ଷ୍ୟକଲେ ଯେ କେହି ଜାଣିବ, ଷଣ୍ଢଟି ବୋଧେ କାନ୍ଦୁଚି । ସେ କାନ୍ଦରେ କୌଣସି ଶବ୍ଦ ନ ଥିଲା, ହେଲେ କେତେ ଭାଷାମୟ, କେତେ କରୁଣ, କେତେ ଗରୀୟାନ୍ ନ ଥିଲା ସେ କାନ୍ଦ ସତେ !!!

ଓଭରବ୍ରିଜ୍ ଉପରେ ସେଦିନ ଥୋଡ଼େ ଲୋକ ଜମିଥିଲେ କ'ଣ ଗୋଟାଏ ଦେଖିବା

ପାଇଁ । ସମ୍ବାଦ ଅପେକ୍ଷା ବିସମ୍ବାଦରେ ହିଁ ମନୁଷ୍ୟର ଆଗ୍ରହ ପ୍ରଚୁର । ସେଠି ସ୍କୁଟର ଅଟକାଇ ପଚାରିବାରୁ ପାଖରେ ଠିଆ ହୋଇଥିବା ସାଇକେଲ୍ ଚଢ଼ା ବାବୁଜଣକ ଅନ୍ୟମନସ୍କ ଭାବରେ କହିଲେ - ପାଗଳଟାଏ ଟ୍ରେନ୍‌ରେ କଟିଯାଇଛି ଭୋରୁ ଭୋରୁ ।

ମୋ ଅବଶ ହୋଇ ଆସୁଥିବା ଗୋଡ଼ ଦୁଇଟା ଆପେ ଆପେ ଘୋଷାଡ଼ି ହୋଇଗଲା ସେ ଆଡ଼କୁ । ଏବଂ ସେଠି ଦାରୁଣ ଦୁଃସମ୍ବାଦଟିଏ ସତେ ଯେପରି ଅପେକ୍ଷା କରି ରହିଥିଲା ମତେ । ମୁଣ୍ଡଗଣ୍ଡି ଅଲଗା ହୋଇଯାଇଥିବା ଯେଉଁ ବୀଭତ୍ସ ଲୋକଟିକୁ ମୁଁ ଦେଖିଲି, ସେ ଥିଲା ଫକୀରା । ହଁ, ଫକୀରା । ମୋ ଚାଳିଶ୍ ବର୍ଷର ଶରୀର ହଠାତ୍ ସଂକୁଚିତ ହୋଇଗଲା ଅଭାବିତ ଦୁର୍ଘଟଣାଟି ଦେଖି । ପାହାନ୍ତା ପ୍ରହରର ଅନ୍ଧାର ଭଳି ମୋର ସବୁ ନିଷ୍ଠା, ବିଶ୍ୱାସ, ଦମ୍ଭ ଏକାବେଳେକେ ଭୁଷୁଡ଼ି ପଡ଼ିଲା । ଏତେ ନିଷ୍ଠାପର ତଥା ଦରଦୀ ମଣିଷଟିଏ ଏ ପ୍ରକାର ଦୟନୀୟ ସମାପ୍ତିରେ ମୋ ଭିତରଟା ଛିନ୍‌ଛତ୍ର ହୋଇଗଲା ପରି ଲାଗିଲା । ଶୁଭିଲା ପୋଲିସ୍ ସବ୍-ଇନିସ୍‌ପେକ୍ଟରଙ୍କ କର୍କଶ ସ୍ୱର - ଲାଓ୍ୱାରିସ୍ ବଡ଼ି । ଏଟା ପାଗଳଟା । ପୋଷ୍ଟମର୍ଟମ୍ ପାଇଁ ଲାସ୍‌କୁ ଉଠାଅ ଟ୍ରଲି ଉପରକୁ ।'

ଦେହ ଭିତରେ କରେଣ୍ଟଟାଏ ଚାର୍ଜ ହୋଇଗଲା । 'ଲାଓ୍ୱାରିସ୍ ବଡ଼ି !! ଏକଦା ପୃଥିବୀ ତଥା ମଣିଷମାନଙ୍କୁ ଏତେ ଶ୍ରଦ୍ଧାର ସହିତ ଗ୍ରହଣ କରିଥିବା ମଣିଷଟାର ଲାସ୍ କଣ କେବେ ଲାଓ୍ୱାରିସ୍ ହୋଇପାରେ !! ଗୋଟେ ଅସ୍ୱାଭାବିକ ବେଦନାକ୍ଲିଷ୍ଟ ନୀରବତା ଭିତରେ ମୋ ଅସ୍ତିତ୍ୱ ଫେଣ୍ଟି ହୋଇଯିବା ପରି ଲାଗିଲା । ଫକୀରାର ଡେଡ୍ ବଡ଼ିକୁ ତାର ଆତ୍ମୀୟ କହି ଗ୍ରହଣ କରିବି ନା କିଛି ନ ଦେଖିଲା ପରି ମୁହଁ ଛପାଇ ଭିଡ଼ ଭିତରେ କୁଆଡ଼େ ଲୁଚିଯିବି । ମିଳାଇଯିବି !! ମୋ ଭିତରେ ମୁଁ ପଛଘୁଞ୍ଚା ଦେବାକୁ ଆରମ୍ଭ କଲାବେଳେ ସେ କାଳିଆ ଷଣ୍ଢଟି କୁଆଡ଼େ ଥିଲା କେଜାଣି ଭୟଙ୍କର ଗର୍ଜନ କରି ତତ୍‌କ୍ଷଣାତ୍ ଉଭାହେଲା ସେଠି । ପୋଲିସ୍‌ର ଲାଠିମାଡ଼କୁ ବେଖାତିର କରି ସେ ସ୍ପର୍ଦ୍ଧିତ ଠାଣୀରେ ଠିଆହୋଇ ରହିଲା ଫକୀରାର ଲାସ୍ ପାଖରେ । ତା ମୁହଁରୁ ବାହାରୁଥିବା ଅଣଚାସ ପବନ ସୂଚେଇ ଦଉଥିଲା ଯେ - 'ନା, ନା ଯେ ଲାଓ୍ୱାରିସ୍ ନୁହେଁ । ଯେ ମୋ ମୁନିବ, ମୋ ଅନ୍ନଦାତା । ଯାଙ୍କ ଛିନ୍‌ଛତ୍ର ଶରୀରକୁ ଡାକ୍ତରଖାନାରେ ଆହୁରି ଖିନ୍‌ଭିନ୍ ହେବାକୁ ମୁଁ ଦେବିନାହିଁ... ଯାଅ, ସମସ୍ତେ ପଳାଅ ଏଠୁ... ।'

ପରିସ୍ଥିତି ଅଣାୟତ ହେବାରୁ ପୋଲିସ୍‌କୁ ଦୁଇ ରାଉଣ୍ଡ ଗୁଳି ଚଳାଇବାକୁ ପଡ଼ିଥିଲା ଷଣ୍ଢଟିର ଗୋଡ଼କୁ ଲକ୍ଷକରି । ବିକଟ ଯନ୍ତ୍ରଣାରେ ଆର୍ତ୍ତନା କରି ଷଣ୍ଢଟି ସେଇଠି ପେଟେଇ ପଡୁଥିବା ବେଳେ ଫକୀରାର ଲାସ୍‌କୁ ଟ୍ରଲି ଉପରକୁ ଉଠାଇ ନେଉଥିଲେ କେତେଜଣ କନେଷ୍ଟବଳ ।

ଏକନମ୍ବର ହାଟରେ ଫକୀରାର ସେଇ ତାଳବରଡ଼ା ଘେରା ଚାଳିଆଟା ଧୀରେ

ଧୀରେ ଭୁଶୁଡ଼ିବାକୁ ଆରମ୍ଭ କଲା । ଅଭ୍ୟସ୍ତ ପୃଥିବୀଟା ତା ପାଇଁ ଶେଷ ହୋଇଗଲା ଭାବି ଜଖମ ଶରୀରକୁ ନେଇ ସେ ଚାଳିଆ ଭିତରେ ତହଳ ବିକଳ ହେଉଥିବା ଷଣ୍ଢଟି ମଧ୍ୟ ଆଉ ଉଠି ପାରିଲା ନାହିଁ । ଦିନେ ସକାଳୁ ଲୋକମାନେ ଦେଖିଲେ ସେ ସେଠି ନିସ୍ପଲକ ଆଖି ଆଉ ନିସ୍ପନ୍ଦ ଦେହକୁ ଲମ୍ବାଇ ଦେଇ ଶୋଇଛି ଏବଂ ତା ଚାରିଟା ଗୋଡ଼ ଲାଠିପରି ସିଧା ହୋଇଯାଇଛି ।

କୋଉ ଜଣେ ସହୃଦୟ ମଣିଷ ମୁହଁରୁ ଅକସ୍ମାତ୍ ବାହାରି ଆସିଲା – "ଆହା... ।"



# ମେଘ ମହ୍ଲାର

ଯୁଗଳ କିଶୋର ଦର

ଜୀବନରେ ଅନେକ କିଛି ହଜିଯାଏ । ମଣିଷ ଅନେକ କିଛି ଭୁଲିଯାଏ । ବୋଧହୁଏ ତାହାକୁ ଭୁଲିଯିବାକୁ ହୁଏ । ନ ହେଲେ ବଞ୍ଚି ପାରିବ ନାହିଁ ।

କେତେ ଆତ୍ମୀୟ, କେତେ ଭଲ ପାଇବା ମଣିଷ ଏମିତି ହଜିଯାଆନ୍ତି; ଯେଉଁମାନଙ୍କର ଦେଖା ସାକ୍ଷାତ, ଖବର ଆଉ ହୁଏତ ଜୀବନରେ ମିଳେ ନାହିଁ ।

ହଜିଯାଇଥିବା ମଣିଷର ସନ୍ଧାନ, କିନ୍ତୁ ପାଇଥିଲେ ଓସ୍ତାଦ ରୋଶନଲାଲ୍ । ଏହି ସନ୍ଧାନ ପାଇ ନ ଥିଲେ ବୋଧହୁଏ ଭଲ ହୋଇଥାଆନ୍ତା ।

ଆଖିରେ ଲୋତକ ଭରି ଝରକା ପାଖରେ ଆସି ଠିଆହେଲେ ଓସ୍ତାଦ ରୋଶନଲାଲ । ଦୀର୍ଘ ତିରିଶ ବର୍ଷ ଧରି ସେ ତାହାକୁ ଖୋଜିଛନ୍ତି । ସାରା ଭାରତବର୍ଷକୁ ସେ ବହୁତ ଥର ବୁଲିଛନ୍ତି । ବହୁତ ରଜା, ମହାରାଜାଙ୍କର ଦରବାରରେ ସଙ୍ଗୀତ ଆସରରେ ଯୋଗ ଦେଇଛନ୍ତି । କିନ୍ତୁ ତାହାର କୌଣସି ଖବର ପାଇନଥିଲେ । ସବୁ କଥା ଭୁଲିଯାଇ ସଙ୍ଗୀତର ମୂର୍ଚ୍ଛନା ତଳେ ନିଜର ସବୁକିଛି ଅଜାଡ଼ି ଦେଇଥିଲେ ଓସ୍ତାଦ ରୋଶନଲାଲ ।

ତାହାର ଲାଜମିଶା ଆଖି । କିଶୋରୀ କୋମଳ ଚେହେରା ତଳେ କି ଯାଦୁ ମନ୍ତ୍ର ଥିଲା କିଏ ଜାଣେ । ରୋଶନଲାଲଙ୍କର ମନେ ହୋଇଥିଲା ସେ ଏମିତି ଗୋଟିଏ ମନ ଖୋଜିଥିଲେ । ତାହାରି ଆଖିତଳେ ଏତେ କିଛି ଆଜିଯାଏ କିପରି ଲୁଚି ରହିଥିଲା ? କିନ୍ତୁ ରୋଶନଲାଲଙ୍କର ଜୀବନରେ ସବୁ କିଛି ହଠାତ୍ ଯେପରି ଓଲଟ ପାଲଟ ହୋଇ ଯାଇଥିଲା । ମନର ଆବେଗ ନେଇ ଦଉଡ଼ି ଯିବାରେ କଣ ମଣିଷ ଏମିତି ଆଘାତ ପାଏ ।

ଆଜି ଓସ୍ତାଦ ରୋଶନଲାଲଙ୍କର ଯେପରି ସବୁ କିଛି ଗୋଳମାଳିଆ ହୋଇଯାଇଛି । ସେ ଭାବୁଛନ୍ତି, ଏଠାକୁ ଆସି ନ ଥିଲେ ଭଲ ହୋଇଥାଆନ୍ତା । ତାଙ୍କର ହଜିଲା ଅତୀତକୁ ସେ ଏପରି ଭାବରେ ପାଇ ଜୀବନରେ ଚରମ ଆଘାତ ପାଇ ନ ଥାନ୍ତେ ।

ଯୋଧପୁର ରଜାଙ୍କର ନିମନ୍ତ୍ରଣ ପାଇ ଓସ୍ତାଦ ରୋଶନଲାଲ ଆସିଥିଲେ ସଙ୍ଗୀତ ଉତ୍ସବରେ ଯୋଗ ଦେବାପାଇଁ ? ଭାରତର ନାନା ସ୍ଥାନରୁ ଅନେକ ଓସ୍ତାଦ ଆସିଥିଲେ । ଯୋଧପୁରର ରଜା, ରୋଶନଲାଲଙ୍କୁ ଅଧିକ ସମ୍ମାନ ଦେଇ ତାଙ୍କର ଗୋଡ଼ ଛୁଇଁ ପ୍ରଣାମ କରି ସଙ୍ଗୀତ ଆରମ୍ଭ କରିବା ପାଇଁ ଅନୁରୋଧ ଜଣାଇଥିଲେ ।

ରାତି ପ୍ରାୟ ଗୋଟାଏ ହେବ । ବାହାରେ ଅଫୁରନ୍ତ ବର୍ଷା । ରୋଶନଲାଲଙ୍କର ମନତଳେ କାହିଁକି କେଜାଣି କେତେଦିନ ତଳେ ହଜି ଯାଇଥିବା ଆମେଜ୍ ହଠାତ୍ ଜାଗି ଉଠିଥିଲା । ଏସ୍ରାଜକୁ କୋଳକୁ ଟାଣି ନେଇ ଧୀରେ ଧୀରେ ଆଙ୍ଗୁଳି ଚଳନା କରି ଆଳାପ ଆରମ୍ଭ କରିଥିଲେ । ମେଘମେଦୁର ଆକାଶରେ ଘଡ଼ଘଡ଼ି, ବିଜୁଳିର ଚମକ ଜାଗି ଉଠୁଥାଏ । ବର୍ଷାର ଶବ୍ଦ ଭାସି ଆସୁଥାଏ । ରୋଶନଲାଲ ବୋଧହୁଏ ନିଜକୁ ହଜାଇ ଦେଇଥିଲେ । ଧୀରେ ଧୀରେ ଆଖିବୁଜି ମେଘ ମହ୍ଲାର ରାଗର ଆଳାପ ଆରମ୍ଭ କରିଥିଲେ ।

ଆସର ମଧ୍ୟରେ ଗୋଟାଏ ନିସ୍ତବ୍ଧତା ବିରାଜ କରିଥିଲା । କି ଅପୂର୍ବ ଦରଦଭରା ମରାମୀ କଣ୍ଠସ୍ୱର । ଉପସ୍ଥିତ ଥିବା ପ୍ରତ୍ୟେକଙ୍କର ହୃଦୟରେ ଅପୂର୍ବ ପୁଲକ ଜଗାଇଥିଲା ।

ବାହାରେ ପ୍ରବଳ ବର୍ଷା ପବନର ତାଣ୍ଡବ ନୃତ୍ୟ । ଆଉ ଆସର ମଧ୍ୟରେ ମେଘମହ୍ଲାରର ପ୍ରତିଧ୍ୱନି । ସତେ ଅବା ମେଘଦୂତର ଏହା ଓସ୍ତାଦ ରୋଶନଲାଲଙ୍କ ପାଇଁ ଅଭିନନ୍ଦନ ।

ନାନା ପ୍ରକାର ତାନ, ଲୟ, ମୂର୍ଚ୍ଛନା ମଧ୍ୟରେ ଦୀର୍ଘ ଦୁଇଘଣ୍ଟା ଯାଏ ସୁର ଲହରୀ ଝଂକୃତ ହୋଇ ଧୀରେ ଧୀରେ ବନ୍ଦ ହୋଇଗଲା ।

ଯୋଧପୁରର ରଜା ନିଜ ସ୍ଥାନରୁ ଉଠିଆସି ରୋଶନଲାଲଙ୍କର ପାଦ ଛୁଇଁ ପ୍ରଣାମ କରି କହିଲେ, ଆପଣ ଧନ୍ୟ ଓସ୍ତାଦଜୀ । ବହୁଦିନ ହେଲା ଏପରି ସଙ୍ଗୀତ ଶୁଣିବାର ସୁଯୋଗ ମୁଁ ପାଇନଥିଲି ।

ସଭାରେ ଉପସ୍ଥିତ ଥିବା ଅନ୍ୟାନ୍ୟ ସଙ୍ଗୀତଜ୍ଞମାନେ ମଧ ଓସ୍ତାଦ ରୋଶନଲାଲଙ୍କର ପ୍ରଶଂସା କରିଥିଲେ । ଆଉ ଗୋଟିଏ ଗୀତ ଗାଇବା ପାଇଁ ସମସ୍ତେ ଅନୁରୋଧ ଜଣାଇଥିଲେ । କିନ୍ତୁ ଓସ୍ତାଦ ରୋଶନଲାଲ୍ ହାତଯୋଡ଼ି କ୍ଷମା ପ୍ରାର୍ଥନା ଜଣାଇ କହିଥିଲେ - ମୋତେ ଆପଣମାନେ ଆଜି କ୍ଷମା କରନ୍ତୁ ।

ଏହି ସମୟରେ ଜଣେ ଭୃତ୍ୟ ଆସି ରଜାଙ୍କୁ ଜଣାଇଥିଲା, ହଜୁର, ରେଶମବାଈଙ୍କର ଦେହ ଅତ୍ୟନ୍ତ ଅସୁସ୍ଥ । ଆପଣ ଶୀଘ୍ର ଆସନ୍ତୁ । ରାଜା ସାହେବ ଉଠି ପଡ଼ିଲେ । ସମସ୍ତଙ୍କ ପାଖରେ କ୍ଷମା ମାଗି ଭିତରକୁ ଚାଲି ଯାଇଥିଲେ । ଆସର ଭାଙ୍ଗି ଯାଇଥିଲା ।

ବାହାରେ ଅବିରାମ ବର୍ଷଣ ଚାଲିଥାଏ । ଆସରରୁ ଫେରି, ରୋଶନଲାଲ ଆଉ ଶୋଇପାରି ନଥିଲେ । ଝରକା ପାଖରେ ଆସି ଠିଆ ହୋଇଥିଲେ । ମନେ ହେଉଥାଏ, ସତେ ଯେପରି କେଉଁ ବିରହୀର ଅଶାନ୍ତ ହୃଦୟର ଆକୁଳ ଆର୍ତ୍ତନାଦ ବାହାରେ ଝରିପଡୁଛି ।

ପୁଣି ଧୀରେ ଧୀରେ ବିଛଣା ପାଖକୁ ଫେରିଆସି ଏସ୍ରାଜକୁ ଉଠାଇନେଲେ ରୋଶନଲାଲ୍ । କିଛି ସମୟ ପୂର୍ବରୁ ସେ ଯେଉଁ ମେଘମହ୍ଲାର ଗାଉଥିଲେ, ପୁଣି ତାହାକୁ ଆରମ୍ଭ କଲେ । ଆଜି ଯେପରି କାହିଁକି କେଜାଣି ତାଙ୍କର ଅତୀତ ଫେରି ଆସିଛି । ନିଜର ଦରଦ ଦେଇ ସେ ଏହି ଗୀତକୁ ପୁଣି ଗାଇବାକୁ ଆରମ୍ଭ କଲେ । ଆଖିରୁ ତାଙ୍କର ଲୁହଧାର

ବୋହି ଯାଉଥାଏ । ନିଦ୍ରାତୁର ଶ୍ରାବଣ ନିଶୀଥିନୀର ଛାତିତଳେ ପବନର ତାଳେ ତାଳେ ସେହି ଅପୂର୍ବ ମାଦକତାମୟ ସୁରର ମାୟାଜାଲ ଯେପରି ଘରିଆଡ଼େ ଖେଳିଗଲା । ଆଖିବୁଜି ରୋଶନଲାଲ ଗାଉଥିଲେ–

"ଘୋର ଆଁଧିୟାରା ଶାଓନ ରଜନୀ
କାହାଁ ଗୟୀ ପିୟା ମେରା
କହୁଁ ମେରେ ସଜନୀ ।"

ରୋଶନଲାଲ୍ ବୁଝିପାରିଲେ ନାହିଁ କାହିଁକି ଆଜି ନିଜ ଭିତରେ ସେ ନିଜେ ପାଗଳ ହୋଇଗଲେ । ଦୀର୍ଘ ତିରିଶ ବର୍ଷତଳେ ସେ ଏହିପରି ପାଗଳହୋଇ ଏହି ମେଘମହ୍ଲାରକୁ ଗାଇଥିଲେ । ତାହାପରେ ସେ ଆଉ ଏହି ଗୀତକୁ କୌଣସି ସ୍ଥାନରେ ଗାଇ ନଥିଲେ । କାହିଁକି କେଜାଣି ତାଙ୍କର ଦୀର୍ଘ ତିରିଶ ବର୍ଷର ଅତୀତ ସବୁକିଛି ଭୁଲି ଆଜି ଏହି ବର୍ଷାଝରା ରାତିରେ ତାଙ୍କ ପାଖରେ ପହଞ୍ଚି ଯାଇଛି ।

ରାତି ପ୍ରାୟ ପାହି ଆସିଲାଣି । ଓସ୍ତାଦ ରୋଶନଲାଲ ଏସ୍‌ରାଜକୁ ରଖି ଝରକା ପାଖରେ ଆସି ଠିଆହେଲେ । ଆଖିତଳୁ ଝରିଯାଉଥିବା ଲୁହକୁ ହାତ ପାପୁଲିରେ ପୋଛି ନେଇ ଆକାଶକୁ ଅନାଇଥିଲେ । ମନେପଡ଼ି ଯାଇଥିଲା ସେହି ହଜିଯାଇଥିବା କଥାଗୁଡ଼ାକ ।

ଏହି ଦୁଃଖ ଆଜିର ନୁହେଁ ବହୁଦିନର । ଅନେକ ଦିନର ଦୁଃଖ ଯନ୍ତ୍ରଣା ସଞ୍ଚିତ ଅଛି ଏହି ବୁକୁତଳେ । ଅଗ୍ନିଗର୍ଭା ପର୍ବତପରି ମୁହଁ ବନ୍ଦକରି ସେ କେବଳ ସହି ଯାଇଥିଲେ । କିନ୍ତୁ ଆଜି ତାହା ଯେପରି ସବୁ ବାଧା ବନ୍ଧନ ଛିନ୍ନକରି ନିଜକୁ ପୁଣି ପ୍ରକାଶ କରିଛି ।

ହଠାତ୍ ରାଜବାଟୀର ଦେଓ୍ୱାନଙ୍କର କଥା ଶୁଣି ଚମକି ପଡ଼ିଥିଲେ ଓସ୍ତାଦ ରୋଶନଲାଲ୍ । ଓସ୍ତାଦଜୀ ଶୀଘ୍ର ଆସନ୍ତୁ । ରାଜାସାହେବ ଡାକୁଛନ୍ତି । କଥାର ମର୍ମ ବୁଝିପାରିନଥିଲେ ଓସ୍ତାଦ । କିନ୍ତୁ ଯେଉଁଠାରେ ଯାଇ ଠିଆହେଲେ ଦେଖିଲେ ଗତ ରାତିରେ ଏହିଠାରେ ସଙ୍ଗୀତ ଆସର ବସିଥିଲା ।

ଗୋଟିଏ ଖଟ ଉପରେ ଜଣେ ପ୍ରୌଢ଼ା ଶୋଇଛନ୍ତି । ଗୋଡ଼ଠାରୁ ବେକଯାଏ ଖଣ୍ଡିଏ ଧଳା ଚଦର ଦେଇ ତାହାଙ୍କୁ ଘୋଡ଼ାଇ ଦିଆଯାଇଥିଲା ।

ପାଖରେ ଯୋଧପୁରର ରାଜାସାହେବ ବସିଥିଲେ । ରୋଶନଲାଲ ପହଞ୍ଚିବା କ୍ଷଣି ସେ ଉଠିପଡ଼ି କହିଥିଲେ – ବସନ୍ତୁ ଓସ୍ତାଦଜୀ ।

ରୋଶନଲାଲ ସେହି ପ୍ରୌଢ଼ାକୁ ଅନାଇଥିଲେ ।

ଗୋଟିଏ ଅସ୍ପଷ୍ଟ ଛାଇ ତାଙ୍କର ଆଖିଆଗରେ ଭାସିଉଠିଲା । ଚମକି ପଡ଼ିଥିଲେ । ସେ କାହାକୁ ଦେଖୁଛନ୍ତି ? ସେ ଏଠାକୁ ଆସିଲା କିପରି ?

କିଛି ନକହି ନିରବରେ ସେ ପ୍ରୌଢ଼ାଙ୍କ ମୁହଁକୁ ଅନାଇ ରହିଲେ । ସତେ ଯେପରି

ତାଙ୍କ ମନତଳେ କୌଣସି ଭାବନା ଜାଗିନାହିଁ, ତାହା ହିଁ ଜଣାଇଲେ । ରାଜାସାହେବ କହିଲେ - ଓସ୍ତାଦଜୀ, ଆପଣ କାଲି ଯେଉଁ ମେଘମହ୍ଲାର ଗାଉଥିଲେ, ତାହା ଶୁଣି ରେଶମାବାଈଙ୍କର ମନତଳେ ଉତ୍କଣ୍ଠା ପ୍ରବଳ ବଢ଼ି ଯାଇଥିଲା । ଆଜକୁ ତିନିବର୍ଷ ହେବ ସେ ପକ୍ଷାଘାତ ରୋଗରେ ପୀଡ଼ିତ ।

ଆପଣମାନେ ଆସିଛନ୍ତି ଓ ଆପଣମାନଙ୍କ ସଙ୍ଗୀତ ଶୁଣିବାପାଇଁ ତାଙ୍କର ପ୍ରବଳ ଆଗ୍ରହ ହେବାରୁ, ପେଣ୍ଡାଲର ପଛପଟେ ଖଟରେ ଶୋଇ ସେ ଗୀତ ଶୁଣିଥିଲେ । କିନ୍ତୁ ଆପଣଙ୍କର ମେଘମହ୍ଲାର ଶେଷ ହେବାପରେ ସେ ଯେପରି ବିଶେଷ ଅସୁସ୍ଥ ହୋଇ ପଡ଼ିଥିଲେ । କେବଳ କହିଥିଲେ - ରାଜାସାହେବ, ଏହି ଓସ୍ତାଦଙ୍କୁ ମୁଁ ଥରେ ଦେଖିବାକୁ ଚାହେଁ । ତାହାପରେ ସେ ବଡ଼ ନିସ୍ତେଜ ହୋଇ ପଡ଼ିଥିଲେ । ଡାକ୍ତର ସେତିକିବେଳୁ ତାହାଙ୍କୁ ଚିକିତ୍ସା କରୁଛନ୍ତି ।

କିଛିସମୟ ପୂର୍ବରୁ ଆପଣ ପୁଣି ସେହି ଯେଉଁ "ଘୋର ଆଂଧିୟାରା ଶାଓନ ରଜନୀ" ମେଘମହ୍ଲାରକୁ ଗାଉଥିଲେ, ତାହାଶୁଣି ରେଶମବାଈ ହଠାତ୍ ବିଛଣାରୁ ଉଠିପଡ଼ିବାମାତ୍ରେ ତଳେ ପଡ଼ିଯାଇଥିଲେ । ତାଙ୍କର କଥା କହିବା ଶକ୍ତି ହଠାତ୍ ଲୋପ ପାଇଗଲା ।

ରୋଶନଲାଲ ଦେଖିଥିଲେ, ପ୍ରୌଢ଼ାଙ୍କର ଆଖିରୁ କେବଳ ଲୁହ ଝରି ଯାଉଛି । ସେ ଆତୁର ନୟନରେ ଅନାଇଛନ୍ତି । ଡାକ୍ତର ତାହାଙ୍କୁ ଇଞ୍ଜେକ୍‌ସନ୍ ଦେବାମାତ୍ରେ ଧୀରେ ଧୀରେ ତାଙ୍କର ଆଖି ଦୁଇଟି ବୁଜି ହୋଇ ଯାଇଥିଲା ।

ରୋଶନଲାଲ ଖଟ ପାଖକୁ ଯାଇ ପ୍ରୌଢ଼ାଙ୍କର ମଥାପାଖରେ ବସି ସ୍ଥିର ଦୃଷ୍ଟିଦେଇ ଚାହିଁରହିଲେ । ଭାବିଲେ ସେ ଯେଉଁ ଅଭାବନୀୟ ସ୍ୱର୍ଗୀୟ ପ୍ରେମ ଦିନେ ପାଇଥିଲେ, ତାହାକୁ ଦୀର୍ଘ ତିରିଶବର୍ଷ ହେବ ହଜାଇ ଅନନ୍ତ ବେଦନାର ବୋଝ ଛାତିରେ ଚାପି ସେ ଜ୍ୱଳନ୍ତ ଉଲ୍‌କାପରି ଘୂରି ବୁଲୁଛନ୍ତି ।

ଅନ୍ଧକାରଭରା ମହାଶୂନ୍ୟକୁ ଅନାଇ ବ୍ୟଥାଭରା ଦୃଷ୍ଟି ମେଲି ସେ କେବଳ ଚାହିଁରହିଲେ । ଭାବିପାରି ନଥିଲେ ଯୋଧପୁର ରଜାଙ୍କ ପାଖକୁ ରଜନୀ ଆସିଲା କିପରି ? ଆଉ ରେଶମବାଈ ନାମ କିଏ ଦେଲା ?

କେତେବେଳଯାଏ ନିରବରେ ବସିରହିଥିଲେ ରୋଶନଲାଲ୍, ତାଙ୍କର ଖେୟାଲ୍ ନାହିଁ । ରାଜାସାହେବଙ୍କର ଡାକଶୁଣି ଚମକି ଉଠିଥିଲେ । ଆଖିରୁ ଝରି ଯାଉଥିବା ଲୁହକୁ ପୋଛିନେଇ ଠିଆହେଲେ । କିନ୍ତୁ ରାଜାସାହେବ ପଚାରିଥିଲେ- ଓସ୍ତାଦଜୀ, ଆପଣଙ୍କ ଆଖିରେ ଲୁହ ? ଆପଣ କାନ୍ଦୁଛନ୍ତି ? କାହିଁକି ? କ'ଣ ହେଲା ? ଆପଣ କ'ଣ ରେଶମାବାଈଙ୍କୁ ଜାଣନ୍ତି ?

କୌଣସି ଉତ୍ତର ଦେଇନଥିଲେ ରୋଶନଲାଲ । ନିରବରେ ଚାଲି ଆସିଥିଲେ ।

ସନ୍ଧ୍ୟା ସମୟରେ ଖବର ପାଇଲେ, ରେଶମାବାଈର ହୃତକ୍ରୀୟା ବନ୍ଦ ହୋଇଯାଇ ମୃତ୍ୟୁ ହୋଇଛି ।

ପଥର ପରି ସ୍ଥାଣୁ ପାଲଟି ଯାଇଥିଲେ ଓସ୍ତାଦ ରୋଶନଲାଲ । ସେ ତେବେ କ'ଣ ଏହା ହିଁ ଦେଖିବା ପାଇଁ ଏହିକଥା ଶୁଣିବା ପାଇଁ ଏଠାକୁ ଆସିଥିଲେ; ତେବେ କ'ଣ ସେହି ମେଘମହ୍ଲାର ଗୀତଶୁଣି ରଜନୀର ମାନସିକ ଅବସ୍ଥା ବଢ଼ି ଯାଇଥିଲା ? ତେବେ କଣ ରଜନୀର ମୃତ୍ୟୁପାଇଁ ସେ ଦାୟୀ ? ଏତେ ଦିନପରେ ଦେଖାହେଲା । କିନ୍ତୁ ପଦେ କଥା ତାହା ସହିତ କରିପାରିଲେ ନାହିଁ । କେତେ ବର୍ଷର ଅକୁହା କଥାଗୁଡ଼ାକ ଏବେ ମଧ ଛାତି ତଳେ ଜମାହୋଇ ରହିଛି । ରଜନୀ କଣ ତାହାକୁ କିଛି କହିଥାଆନ୍ତା ?

ତିରିଶ ବର୍ଷ ତଳକୁ ମନଟା ଗ୍ଭଲିଯାଇଥିଲା ରୋଶନଲାଲଙ୍କର ।

ସେତେବେଳେ ତାଙ୍କର ବୟସ ଥିଲା ପଚିଶବର୍ଷ । ସଙ୍ଗୀତ ଶିଖିବା ପାଇଁ ଯାଇଥିଲେ ବିକାନୀରର ପ୍ରସିଦ୍ଧ ଓସ୍ତାଦ ପଣ୍ଡିତ ମଦନ୍‌ମୋହନଙ୍କ ପାଖକୁ । ପାଞ୍ଚବର୍ଷ ଗୀତ ଶିଖିବା ପରେ ବିକାନୀରର ରାଜାଙ୍କ ଦରବାରରେ ମଜଲିସ୍‌ରେ ସେ ଏହି ଅଭିଶପ୍ତ ଗୀତ "ଘୋର ଆଁଧିୟାରା ଶାଓନ ରଜନୀ

କାହାଁଗୟୀ ପିୟା ମେରା କହୁଁ ମେରେ ସଜନୀ" । ଗାଇଥିଲେ । ସଭାରେ ପ୍ରଶଂସା ଅଜାଡ଼ି ହୋଇ ପଡ଼ିଥିଲା । କିନ୍ତୁ ରୋଶନଲାଲ କଣ ଜାଣିଥିଲେ, ଏହି ପ୍ରଶଂସା ପଛରେ ଆଉ ଗୋଟିଏ ଅଭିଶାପ ତାହାକୁ ହାତଠାରି ଡାକୁଛି ବୋଲି ।

ରଜାଙ୍କର ଦେଓ୍ୱାନଙ୍କର ଝିଅ ରଜନୀ ସେଦିନ ରୋଶନଲାଲଙ୍କର ପାଦ ଛୁଇଁ ପ୍ରଣାମ ଜଣାଇ ଅନୁରୋଧ କରିଥିଲା – ଆପଣ ମୋତେ ଗୀତ ଶିଖାଇବେ ଓସ୍ତାଦଜୀ ? ଗୁରୁଙ୍କ ମୁହଁକୁ ଅନାଇଥିଲେ ରୋଶନଲାଲ । ଅଳ୍ପ ହସି ହସି ମଦନଲାଲ ନିଜର ସମ୍ମତି ଜଣାଇଥିଲେ ସେହିଦିନଠାରୁ ଦେଓ୍ୱାନଙ୍କ ଘରକୁ ରୋଶନଲାଲ ଗୀତ ଶିଖିବାପାଇଁ ଆସିଥିଲେ । ଆଉ ଦୁଇଟି ଯୁବକ ଯୁବତୀ ସଙ୍ଗୀତର ମୂର୍ଚ୍ଛନାତଳେ ହଜି ଯାଇଥିଲେ ।

ଦୀର୍ଘ ତିନିବର୍ଷ ବିତିଯାଇଥିଲା । ରୋଶନଲାଲ କହିଥିଲେ – ରଜନୀ ତୁମ କଣ୍ଠରେ ଯେକୌଣସି ଗୀତ ଅତି ସୁନ୍ଦର ରୂପ ନେବ । ଗୀତରେ ତାହାର ମାଧୁର୍ଯ୍ୟ ନାହିଁ, ଅଛି ତୁମ କଣ୍ଠରେ । ମୋର ସବୁକିଛି ବିଦ୍ୟା ତୁମକୁ ଶିଖାଇ ଦେଇଛି ।

ମୁଗ୍ଧ ଦୃଷ୍ଟିରେ ଅନାଇଥିଲା ରଜନୀ । ସନ୍ଧ୍ୟା ନଇଁଆସୁଥିଲା । ରୋଶନଲାଲଙ୍କର ହାତ ଉପରେ ହାତ ରଖି ରଜନୀ ଧୀରେ ଧୀରେ କହିଥିଲା ଓସ୍ତାଦଜୀ, ତୁମେ ମୋହବତ୍ କେବେ କରିଛ ? ଜିନ୍ଦଗୀର ସବୁଠାରୁ ବଡ଼ ଦୌଲତ୍ ମୋହବତ୍ ? ଜୀବନର ବଡ଼ ଐଶ୍ୱର୍ଯ୍ୟ ?

ଆଜି ରୋଶନଲାଲ୍‌ଙ୍କର ମନେପଡ଼ି ଯାଉଛି ଜୀବନର ସବୁଠାରୁ ବଡ଼ ଐଶ୍ୱର୍ଯ୍ୟକୁ

ସେ ଚିରଦିନ ପାଇଁ ହଜାଇ ବସିଲେ । ଜୀବନର ବଡ଼ ଦୌଲତ ଆଜି ତାଙ୍କର ହଜିଗଲା ।

ଏବେ ହସ ଲାଗୁଛି ରୋଶନଲାଲଙ୍କୁ । ପ୍ରେମ ? ବ୍ୟର୍ଥ ପ୍ରେମିକ ହୋଇ ଆଘାତ ପରେ ଆଘାତ ପାଇ ଦେଶ ଛାଡ଼ିଥିଲେ । ଘର ଛାଡ଼ିଥିଲେ । ଆଉ ଛାଡ଼ିଥିଲେ ଯାହାକୁ ସେ ମନଦେଇ ଭଲ ପାଇଥିଲେ ।

ମୋହବତ୍ ? ହସଲାଗେ, ଆଖିଆଗରେ ସେହି ଛପିଲା ଦିନର ସୁନେଲି ସ୍ୱପ୍ନ ଲିଭିଯାଏ । ଫେରିଯାଏ ସେହି ଛୋଟ ଦିନର ହଜିଲା କଥାଗୁଡ଼ାକ ।

ରଜନୀ ଖିଲି ଖିଲି ହୋଇ ହସିଉଠି ପଚାରିଥିଲା - ଆଚ୍ଛା ଓସ୍ତାଦଜୀ, ଦୀପକ ରାଗିଣୀରେ କଣ ନିଆଁ ଜଳିଉଠେ ? ମିଆଁ ତାନସେନ୍ କଣ ଏହି ଦୀପକ ରାଗ ମଧ୍ୟରେ ନିଆଁ ଜଳାଇ ପାରିଥିଲେ ?

ରୋଶନଲାଲ ଉତ୍ତର ଦେଇ କହିଥିଲେ - ଗାଇ ଜାଣିଲେ ନିଆଁ ଜଳିଉଠେ ସତକଥା । କିନ୍ତୁ ସେହି ନିଆଁ ଏହି କାଠିକୁଟାର ନିଆଁ ନୁହେଁ ରଜନୀ । ସେ ହେଲା ମନତଳ ନିଆଁ, ମନତଳ ନିଆଁକୁ ଜଳାଇଦିଏ । ପ୍ରତି ଶିରାରେ, ଧମନୀରେ ନିଆଁର ଉତ୍ତାପ ମଣିଷ ଅନୁଭବ କରେ । ମଣିଷ ପାଗଳ ହୋଇଯାଏ । ରଜନୀ ପଚାରିଥିଲା - ଆଉ ମେଘ ମହ୍ଲାର ?

ହସିଥିଲେ ରୋଶନଲାଲ । କହିଥିଲେ - ସେଠାରେ ଆକାଶର ମେଘ ଝରେ ନାହିଁ । ମନଆକାଶରେ ମେଘଉଠେ । ଆଉ ଅଶ୍ରୁ ଝରିପଡ଼େ ଟୋପା ଟୋପା ହୋଇ । ତାପଦଗ୍ଧ ମନ ଶାନ୍ତିପାଏ । ଅଶ୍ରୁତଳେ ଶ୍ରାବଣର ଧାରା ଛୁଟିଚାଲେ ।

ଆଜି ଓସ୍ତାଦ ରୋଶନଲାଲଙ୍କର ସବୁକିଛି ମନେପଡ଼ି ଯାଉଛି ।

ରଜନୀର ଶବ ପାଖରେ ଠିଆହୋଇ ଆଖିରୁ ଦୁଇଟୋପା ଲୁହ କେବଳ ଝରାଇଥିଲେ ।

ରଜନୀର ପ୍ରେମକୁ ପ୍ରତ୍ୟାଖ୍ୟାନ କଲାପରି ସାହସ ସେଦିନ ନଥିଲା ରୋଶନଲାଲଙ୍କର । କିନ୍ତୁ ଏହି ପ୍ରେମକୁ ପ୍ରଶ୍ରୟ ଦେଇ ପାରିନଥିଲେ ଦେୱାନଜୀ । ରୋଶନଲାଲଙ୍କୁ ବିକାନୀର ଛାଡ଼ି ଚାଲିଯିବା ପାଇଁ ଆଦେଶ ଦେଇଥିଲେ । ଆଉ ରଜନୀର ସଂଗୀତ ଶିକ୍ଷା ସେହିଦିନଠାରୁ ବନ୍ଦହୋଇ ଯାଇଥିଲା ସବୁଦିନ ପାଇଁ ।

ରୋଶନଲାଲ ଭାବିଥିଲେ ସେ ଏଠାରୁ ଚାଲିଯିବେ ସତକଥା; ହେଲେ ଥରେ ରଜନୀ ପାଖରେ କେଇପଦ କଥା କହି ଚାଲିଯିବା ଦରକାର । କିନ୍ତୁ ଦେଖା ହେବ କିପରି ?

ସାରାରାତି ଶୋଇପାରି ନଥିଲେ ରୋଶନଲାଲ । ଆଖିବୁଜି ଏସ୍‌ରାଜରେ ଆଳାପ ଆରମ୍ଭ କରିଥିଲେ । କିନ୍ତୁ ଏତେ ରାତିରେ ପାଖରେ ଜଣେ ବୁର୍ଖା ପିନ୍ଧିଥିବା ରମଣୀଙ୍କୁ ଦେଖି ଚମକି ପଡ଼ିଥିଲେ ରୋଶନଲାଲ । ବୁର୍ଖାର ପରଦାକୁ ଖୋଲିଦେଇ ଆବେଗଭରା କଣ୍ଠରେ ରଜନୀ କହିଥିଲା ରୋଶନଲାଲ ତୁମେ ମୋତେ ଏଠାରୁ ନେଇ ଚାଲିଯାଇ ପାରିବ ?

ଚାଲ, ଆମେ ଏଠାରୁ ବର୍ତ୍ତମାନ ଏହି ରାତିରେ ଚାଲିଯିବା ।

ଇତସ୍ତତ କରିଥିଲେ ରୋଶନଲାଲ । କିନ୍ତୁ ରଜନୀର କଣ୍ଠ ଆହୁରି ଉତ୍ତେଜିତ ହୋଇ କହିଥିଲା – ତୁମେ ଜାଣିଛ ? ତୁମକୁ ମାରିଦେବା ପାଇଁ ବାପାଙ୍କର ଆଦେଶ ମୁଁ ଶୁଣିପାରିଛି । କିନ୍ତୁ ଓସ୍ତାଦଜୀ, ଏକଥା ମୁଁ ଆଦୌ ବରଦାସ୍ତ କରିପାରିବି ନାହିଁ । ମୋତେ ସାଥିରେ ନେଇ ତୁମେ ଆଜି ରାତିରେ ଏଠାରୁ ପଳାଇଚାଲ ।

କେବଳ ମନ୍ତ୍ରମୁଗ୍ଧ ଭାବରେ ରଜନୀକୁ ଅନାଇଥିଲେ ରୋଶନଲାଲ । ତାଙ୍କର କର୍ତ୍ତବ୍ୟ ବିଷୟରେ ସେ କିଛି ଚିନ୍ତା କରିପାରି ନଥିଲେ । କିନ୍ତୁ ରଜନୀ କହିଥିଲା – ମୁଁ ଜାଣେ, ତୁମେ ମୋତେ ଭଲପାଇ ପାରିନାହଁ; ନହେଲେ ତୁମ ମନତଳେ ଏପରି ଭାବାନ୍ତର ଜାଗିନଥାନ୍ତା । ମୋର ଅପେକ୍ଷା କରିବାର ବେଶି ସମୟ ଆଉ ହାତରେ ନାହିଁ । ମୁଁ ଚାଲିଯାଉଛି । ଜାଣେ ନାହିଁ, ଆମର ଆଉ ଦେଖାହେବ କି ନାହିଁ । କିନ୍ତୁ ତୁମେ ବର୍ତ୍ତମାନ ଏଠାରୁ ପଳାଇଯାଅ । ଯଦି ଭାଗ୍ୟରେ ଥିବ ତେବେ ଜୀବନରେ ପୁଣି ଆମର ଦେଖା ହୋଇପାରେ ।

ରଜନୀ ଯେପରି ଭାବରେ ଆସିଥିଲା, ପୁଣି ସେହିପରି ଭାବରେ କଳା ବୁର୍ଖା ପିନ୍ଧି ଅନ୍ଧାର ଭିତରେ ଲୁଚିଯାଇଥିଲା ।

ରୋଶନଲାଲ କିଛି ସମୟ ସ୍ଥାଣୁପରି ବସି ରହିଥିଲେ । କ'ଣ କରିବେ କିଛି ଭାବିପାରି ନଥିଲେ ତାଙ୍କର ଅକୁହା କଥାଗୁଡ଼ାକ ମନତଳେ ମରିଯାଇଥିଲା । ହଠାତ୍ ହାତରେ ଏସ୍ରାଜକୁ ଧରି କାନ୍ଧରେ ଝୁଲାକୁ ପକାଇ ଅନ୍ଧାର ଭିତରେ ଘରଛାଡ଼ି ବାହାରି ପଡ଼ିଥିଲେ ରୋଶନଲାଲ୍ ।

ଦୀର୍ଘ ତିରିଶ ବର୍ଷ ବିତିଯାଇଛି । ରଜନୀର ଦେଖା ପାଇନଥିଲେ । କିନ୍ତୁ ଆଜି ଏହି ରଜନୀକୁ ରେଶମାବାଈ ଭାବରେ ଦେଖି କିଛି ବୁଝିପାରି ନଥିଲେ ରୋଶନଲାଲ । ଏହି ଗୋପନ ରହସ୍ୟ ଗୋପନ ରହିଗଲା ସବୁଦିନ ପାଇଁ । ତେବେ କଣ ରଜନୀ ସେହି ରାତିରେ ଘର ଛାଡ଼ିଦେଇ ଚାଲିଆସି ରେଶମାବାଈ ଭାବରେ ଜୀବନ ଆରମ୍ଭ କରିଥିଲା ?

ରାଜାସାହେବଙ୍କଠାରୁ ରୋଶନଲାଲ୍ ଶୁଣିଥିଲେ ଯେ ତିନିବର୍ଷ ତଳେ ଗୋଟିଏ ସଂଗୀତ ଆସରରେ ରେଶମାବାଈ ଏହି ମେଘମହ୍ଲାର "ଘୋର ଆଁଧିୟାରା ଶାଓନ ରଜନୀ" ଗାଇବାବେଳେ ହଠାତ୍ ମୂର୍ଚ୍ଛା ହୋଇ ଯାଇଥିଲେ । ଦୁଇଦିନ ଅଜ୍ଞାନ ରହିବା ପରେ ଯେତେବେଳେ ଜ୍ଞାନ ଫେରିଆସିଥିଲା ସେତେବେଳେ ଡାକ୍ତର କହିଥିଲେ ବାଈଜୀ, ପକ୍ଷାଘାତ ରୋଗରେ ପୀଡ଼ିତ । ଆପଣ କୁହନ୍ତୁ ଓସ୍ତାଦଜୀ, ବାଈଜୀଙ୍କୁ କେଉଁଆଡ଼େ ଆଉ ଛାଡ଼ିଦେଇ ଥାଆନ୍ତି ? ଆଜକୁ ତିନିବର୍ଷ ହେବ ସେ ମୋରି ପାଖରେ ଅଛନ୍ତି । ଆପଣ ତେବେ କଣ ରେଶମାବାଈଙ୍କୁ ପୂର୍ବରୁ ଜାଣିଥିଲେ : ରୋଶନଲାଲ କିଛି ସମୟ ନିରବ ରହି କହିଥିଲେ –

ସେ ଦିନେ ମୋର ଛାତ୍ରୀ ଥିଲେ ।

ରୋଶନଲାଲ ତାଙ୍କ ଜୀବନର ସବୁ କଥା ରାଜାସାହେବଙ୍କୁ କହିଥିଲେ । ଆଉ ଏଠାରୁ ଚାଲିଯିବାର ଅଭିଳାଷ ମନେ ମନେ ସ୍ଥିର କରି ନେଇଥିଲେ । ରେଶମାବାଈଙ୍କୁ ଯେତେବେଳେ କବର ଦେବାପାଇଁ ସବୁକିଛି ଆୟୋଜନ ହୋଇଥିଲା, ସେତେବେଳେ ରୋଶନଲାଲ ଏସ୍‌ରାଜ ଧରି ସଂଗୀତର ମୂର୍ଚ୍ଛନା ତଳେ ହଜି ଯାଇଥିଲେ । ଆଖିରୁ ଲୁହ ଧାର ଧାର ବୋହି ଯାଇଥିଲା । ଭାବିଥିଲେ - ରଜନୀର ପ୍ରେମ ତେବେ କଣ ତାଙ୍କ ଉପରେ ପ୍ରତିଶୋଧ ଆଜି ନେଇଛି ? ନହେଲେ ଏପରି ନାଟକୀୟ ଭାବରେ ସେ ତାହାଙ୍କୁ ଛାଡ଼ି ଚାଲିଗଲା କାହିଁକି ? ରଜନୀକୁ ଛାଡ଼ିଦେଇ ଦିନେ ସେ ନିଜର ପ୍ରାଣ ବଞ୍ଚାଇବାପାଇଁ ଅନ୍ଧକାର ଭିତରେ ଚାଲି ଆସିଥିଲେ; କିନ୍ତୁ ରଜନୀ ? ସେ କଣ ତେବେ ନିଜର ସମ୍ମାନ ବଞ୍ଚାଇବାପାଇଁ ଓସ୍ତାଦ ରୋଶନଲାଲର ଭଲ ପାଇବାକୁ ଜୀବନ୍ତ ରଖିବାପାଇଁ ରେଶମବାଈ ହୋଇ ସଂଗୀତର ମୂର୍ଚ୍ଛନା ତଳେ ବଞ୍ଚିରହିବାର ପ୍ରୟାସ କରିଥିଲା ? ସେ କଣ ତେବେ ରୋଶନଲାଲଙ୍କୁ ଭୁଲିପାରି ନଥିଲା ?

ଆଜି ରୋଶନଲାଲ୍ ମୂକ । ଆଖିର ଲୁହ କେବଳ ରଜନୀର ମୃତ୍ୟୁରେ ନିଜର ଭାଷା ଜଣାଇ ଦେଇଛି । ନା, ଏଠାରେ ସେ ଆଉ ମୁହୂର୍ତ୍ତେ ରହିପାରିବେ ନାହିଁ । ଆଜି ସେ ଯୋଧପୁର ଛାଡ଼ି ଚାଲିଯିବେ ।

ରୋଶନଲାଲ ଝରକା ପାଖରୁ ଘୁଞ୍ଚିଆସି ଏସ୍‌ରାଜଙ୍କୁ କାନ୍ଧ ଉପରେ ରଖିଥିଲେ । ହାତ ପାପୁଲିରେ ଝରିଯାଉଥିବା ଲୁହକୁ ପୋଛି ଦେଇଥିଲେ । ଧୀରେ ଧୀରେ ରାଜପ୍ରସାଦ ଛାଡ଼ି ରାସ୍ତାରେ ଗୋଡ଼ ରଖିଥିଲେ ରୋଶନଲାଲ୍ ।

ଦୀର୍ଘ ତିରିଶବର୍ଷ ତଳେ ଦିନେ ଅନ୍ଧକାର ରାତିରେ ସେ ବିକାନୀର ଛାଡ଼ି ଠିକ୍ ଏହିପରି ଭାବରେ ଚାଲିଆସିଥିଲେ । ଆଜି ସେ ପୁଣି ରଜନୀକୁ କବର ଦେଇ ଚାଲିଯିବେ । ମନତଳେ ତାଙ୍କର ସେହି ଦୀର୍ଘ ତିରିଶବର୍ଷ ତଳର ମେଘମହ୍ଲାର ଆଜି ଗୁମୁରି ଗୁମୁରି ଖୋଜିଥିଲା-

"କାହାଁ ଗୟୀ ପିୟା ମେରା
କହୁଁ ମେରେ ସଜନୀ " ।



୨୦୭ ମସିହାରେ ପ୍ରକାଶିତ ନୂଆ ହି

[redacted]

ଯାହା ଘଲିଛି (ବିମଳ ମିତ୍ର)
ପ୍ରକାଶକ : ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ , ବିନୋ ବିହାରୀ, କଟକ - ୨

ଶିଉଳି ଘର (ସୁବୋଧ ଘୋଷ)
ପ୍ରକାଶକ : 'ପଶ୍ଚିମା' ଭୁବନେଶ୍ୱର

ରବୀନ୍ଦ୍ରନାଥ ଠାକୁର (ଶ୍ରେଷ୍ଠଗଳ୍ପ)
ପ୍ରକାଶକ : ଇଂକ ଓଡ଼ିଶା, ଭୁବନେଶ୍ୱର

ନୋବେଲ ବିଜୟୀ ଲେଖକଙ୍କର ନିର୍ବାଚିତ ଗଳ୍ପ
ପ୍ରକାଶକ : 'ଅପୂର୍ବା', ଭୁବନେଶ୍ୱର
ଅନୁବାଦ : ଯୁଗଳ କିଶୋର ଦତ୍ତ